# କବିତା ପ୍ରବେଶ ସହଚର

(୧୯୫୨ ଓ ୧୯୫୩ ମାଟ୍ରିକ ପରୀକ୍ଷା ପାଇଁ)

ଦୁଇଜଣ ପ୍ରବୀଣ ଶିକ୍ଷକ

(କବି ପରିଚୟ, କଠିନ ଶବ୍ଦର ଅର୍ଥ, ବ୍ୟାକରଣଗତ ପ୍ରଶ୍ନର ସମାଧାନ,
ସାରକଥା ଓ ବିଶ୍ୱବିଦ୍ୟାଳୟ ପ୍ରଶ୍ନ ସହ)

ବାଣପୁର ସାହିତ୍ୟ ସଂଘ ପକ୍ଷରୁ
ଓଡ଼ିଶା ପବ୍ଲିଶିଂ ହାଉସ ଦ୍ୱାରା ପ୍ରକାଶିତ
୧୯୫୦

ମୂଲ୍ୟ—ଏକଟଙ୍କା ଆଠଅଣା ମାତ୍ର

# ସୂଚୀ



---

**୧୯୫୨ ମସିହାର ମାଟ୍ରିକ ପରୀକ୍ଷା ପାଇଁ ପାଠ୍ୟ ତାଲିକା**

୧, ୩, ୪, ୮, ୧୩, ୧୪, ୧୮, ୨୦, ୨୧, ୨୭, ୨୮, ୩୨, ୩୩, ୩୬, ୩୭, ୩୮, ୪୦, ୪୫, ୫୦, ୫୧ ଓ ୫୨ ସଂଖ୍ୟକ କବିତାମାନ ।

**୧୯୫୩ ମସିହାର ମାଟ୍ରିକ ପରୀକ୍ଷା ପାଇଁ ପାଠ୍ୟ ତାଲିକା**

୧, ୩, ୪, ୮, ୧୩, ୧୪, ୧୮, ୨୨, ୨୪, ୨୭, ୩୧, ୩୬, ୪୫, ୫୦, ୫୧, ୫୩ ଓ ୬୧ ସଂଖ୍ୟକ କବିତାମାନ ।

ଏହି ସଂଖ୍ୟାମାନ ଓ ଏଥିରେ ବ୍ୟବହୃତ ପୃଷ୍ଠା ଗୁଡ଼ିକ 'କବିତା ପ୍ରବେଶ'ର ଦ୍ୱିତୀୟ ସଂସ୍କରଣରୁ ଗୃହୀତ ।

---

୧୯୫୪ ଓ ୧୯୫୫ ମସିହାର ପାଠ୍ୟ ୧୯୫୩ ମସିହାର ପାଠ୍ୟ [illegible] ସମାନ ।

# କବିତା ପ୍ରବେଶ ସହଚର

## (୧) କେଶବ କୋଇଲି

### ( ୰ ମାର୍କଣ୍ଡ ଦାସ )

**କବି ପରିଚୟ**—ମାର୍କଣ୍ଡ ଦାସ ଅନ୍ତତଃ ପାଞ୍ଚଶ ବର୍ଷ ପୂର୍ବେ ବିଦ୍ୟମାନ ଥିଲେ । ଅନେକେ ତାଙ୍କୁ ଓଡ଼ିଶାର ପ୍ରାଚୀନତମ କବି ବୋଲି ନିର୍ଦ୍ଦେଶ କରିଥାନ୍ତି । ତାଙ୍କର 'କେଶବ କୋଇଲି'ର ଭାଷା ମାର୍ଜିତ ଓ ସରଳ । ରଚନାର ଭାବ ମଧ୍ୟ ହୃଦୟଗ୍ରାହୀ । ତେଣୁ ପୂର୍ବେ କେଶବ କୋଇଲି ପ୍ରାଥମିକ ବିଦ୍ୟାଳୟମାନଙ୍କରେ ପଢ଼ାଯାଉଥିଲା ।

କୋଇଲି ଓଡ଼ିଆ ସାହିତ୍ୟରେ ଏକ ବିଶିଷ୍ଟ ଶ୍ରେଣୀର କବିତା । ସଂସ୍କୃତ ସାହିତ୍ୟର 'ହଂସଦୂତ'ରେ ଯେପରି ହଂସକୁ ଦୂତ ରୂପେ ଗ୍ରହଣ କରି ଥା ସ୍ୱୀୟ ସମ୍ବାଦ ପ୍ରେରଣ କରାଯାଇ [illegible] 'ମେଘଦୂତ'ରେ ଯେପରି ମେଘକୁ ଦୌତ୍ୟକାର୍ଯ୍ୟରେ ନିୟୋଗ କରିବାର ଅବତାରଣା କରାଯାଇଅଛି, ସେହିପରି କୋଇଲିକୁ ସମ୍ବୋଧନ କରି ତା ନିକଟରେ ହୃଦୟର ଭାବ ପ୍ରକାଶ କରିବା ପ୍ରାଚୀନ ଓଡ଼ିଆ କବିତାର ଅନେକ ସ୍ଥଳରେ ଦେଖାଯାଏ । ଓଡ଼ିଆ କୋଇଲିମାନଙ୍କ ମଧ୍ୟରୁ 'କେଶବ କୋଇଲି' ଅନ୍ୟତମ । ଏଥିରେ କୃଷ୍ଣ ମଥୁରା [illegible]

ନ ଆସିବାରୁ ଯଶୋଦା କୋଇଲି ଆଗରେ ନିଜର ମନୋବ୍ୟଥା ପ୍ରକାଶ କରିବାର ବର୍ଣ୍ଣନା କରାଯାଇଅଛି । ସେଥିପାଇଁ ଏହି କୋଇଲିର ଅନ୍ୟ ନାମ 'ଯଶୋଦା କୋଇଲି' । ଏହା ଏପରି ଲୋକପ୍ରିୟ ହୋଇଥିଲା ଯେ ପରବର୍ତ୍ତୀ କାଳରେ ଭକ୍ତ ଜଗନ୍ନାଥ ଦାସ ଏହାର ଆଧ୍ୟାତ୍ମିକ ବ୍ୟାଖ୍ୟା କରି ଅର୍ଥ କୋଇଲି ବୋଲି ଗୋଟିଏ ପୁସ୍ତକ ଲେଖିଥିଲେ ।

କୋଇଲି ସାଧାରଣତଃ ଚଉତିଶା ଛାନ୍ଦରେ ଲେଖା ଯାଇଥାଏ; ଅର୍ଥାତ୍ ଏଥିରେ ଚଉତିଶଟି ପଦ ଥାଏ ଏବଂ ପଦମାନଙ୍କର ଆଦ୍ୟ ଅକ୍ଷର କ, ଖ, ଗ, ଘ ପ୍ରଭୃତି ଚଉତିଶଟି ବ୍ୟଞ୍ଜନ ବର୍ଣ୍ଣର କ୍ରମ ଅନୁସରଣ କରିଥାଏ ।

ଶବ୍ଦାର୍ଥ—(ପୃ ୧) କେଶବ (କେଶ+ବ) କୃଷ୍ଣ; ନଇଲ=ନ ଅଇଲ=ଆସିଲ ନାହିଁ; ଖଣ୍ଡ—ମିଷ୍ଟଦ୍ରବ୍ୟ ବିଶେଷ; ଯାନ୍—ଦୁଃଖ; ଗହନ—ବନ; ଘଟଣ—ସୁନ୍ଦର; ପାଷାଣ—ପଥର; ମେଖଳା—କଟିର ଅଳଙ୍କାର; ପରାଭବ—ଦଣ୍ଡ, ଅପମାନ; (ପୃ ୨) ନିଶାକାଳେ—ରାତ୍ରି ସମୟରେ; ରଡ଼ିଥାନ୍ତି—ଡାକୁଥାନ୍ତି; ଠଣିସୁନ୍ଦର—ଅତିସୁନ୍ଦର; ଡେଡ଼ାଏ —ଥରେ; ଯଶୋବନ୍ତୀ—ଯଶୋଦା; ଶ୍ରୀପତି—କୃଷ୍ଣ; ହଂସଲ—ହଂସୀ ବଳି; ରାଜ୍ଯ—ରାଜା; ତନୁରେ—ଦେହରେ; ତନୟ—ପୁତ୍ର; ଥବିର— ବୃଦ୍ଧ (ସ୍ଥବିର ଶବ୍ଦରୁ ଅପଭ୍ରଂଶ); ଦାମୋଦର—(ଦାମ ବା ପୁଷ୍ପମାଳା ଉଦରରେ ଯାହାର) ଶ୍ରୀକୃଷ୍ଣ; ଦଇବକୀ—ଦେବକୀ; (ପୃ ୩) ନାରାୟଣ— ଶ୍ରୀକୃଷ୍ଣ; ପବିତ (ପ+ଇତ) ପୁଣ୍ୟମୟ; ମଧୁସୂଦନ (ମଧୁ ନାମକ ଦୈତ୍ୟର ବିନାଶକର୍ତ୍ତା) ଶ୍ରୀକୃଷ୍ଣ; ଶୋଭନ—ସୁନ୍ଦର; ଲଳିତରେ—ସୁନ୍ଦରଭାବରେ ବା ଆଦରରେ; ବସ୍ତ୍ର—ବାହୁଏ; ମାଧୋଇ—ମାଧବ, ଅର୍ଥାତ୍ ଶ୍ରୀକୃଷ୍ଣ; ଶ୍ରୀହରି—ଶ୍ରୀକୃଷ୍ଣ; ବାଇ—ବାତୁଳ; ଶଶୀ (ଶଶ+ଇନ୍) ଚନ୍ଦ୍ର; (ପୃ ୪) ବୃନ୍ଦାବନ—ବୃନ୍ଦାବନର ପର୍ବତ ବିଶେଷ; ଛନ୍ଦଣି—ଛନ୍ଦଣି;

**କେଶବ କୋଇଲି**—ଏହି ଚଉତିଶାରେ କୋଇଲିକୁ ସମ୍ବୋଧନ କରି ଯଶୋଦା କେଶବଙ୍କ ପାଇଁ ନିଜର ମନୋଦୁଃଖ ପ୍ରକାଶ କରିଅଛନ୍ତି । ଏହାର ପ୍ରଥମ ପଦରେ ମଧ୍ୟ 'କେଶବ' ଶବ୍ଦ ବ୍ୟବହୃତ ହୋଇଅଛି । ତେଣୁ ଏହାର ନାମ 'କେଶବ କୋଇଲି' ହୋଇଯାଇଅଛି ।

**ସାରକଥା**—ମଥୁରାର ରାଜା କଂସର ଆଦେଶରେ ଅକ୍ରୂର ଗୋପପୁରକୁ ଆସି ରାମକୃଷ୍ଣଙ୍କୁ ରଥରେ ବସାଇ ମଥୁରା ନେଇଗଲେ । ତେଣୁ କୃଷ୍ଣଙ୍କ ମାଆ ଯଶୋଦା ଦୁଃଖ କରି କହୁଅଛନ୍ତି ।

କୃଷ୍ଣ ମଥୁରାକୁ ଯାଇ ଆଉ ଫେରି ଆସିଲା ନାହିଁ । ମୁଁ ଆଉ କାହାକୁ ଖଣ୍ଡ କ୍ଷୀର ଖୁଆଇବି ? କୃଷ୍ଣ ଚାଲିଯିବାରୁ ବୃନ୍ଦାବନ ସୁନ୍ଦର ଦିଶୁନାହିଁ । ନନ୍ଦ ଆଉ ଘରକୁ ଭଲ ପାଉନାହାନ୍ତି । ନନ୍ଦ ବଡ଼ ନିଷ୍ଠୁର । ନିଜେ କୃଷ୍ଣକୁ ସୁବେଶ କରି ରଥରେ ବସାଇ ମଥୁରାକୁ ପଠାଇ ଦେଲେ । ପୂର୍ବେ ଥରେ ମୁଁ କୃଷ୍ଣକୁ ଛାଟରେ ମାରିଥିଲି । ସେହି ଅପମାନରେ ମୋତେ ଛାଡ଼ି କୃଷ୍ଣ ଚାଲିଗଲା କି ? ଅକ୍ରୂର ଦୂତରୂପେ ଆସି ଧନୁଯାତ୍ରା ଦେଖିବା ପାଇଁ କହି ରାମକୃଷ୍ଣଙ୍କୁ ଭଣ୍ଡି ନେଇଗଲା । ମୁଁ ଏବେ ତାଙ୍କୁ ଖୋଜି ହେଉଅଛି । ରାତିରେ କୃଷ୍ଣ ଜହ୍ନମାମୁଁ ମାଗିଲେ ନନ୍ଦ ଉପରକୁ ଚାହିଁ 'ଆ, ଆ' ଡାକୁଥାନ୍ତି । କୃଷ୍ଣଙ୍କର ସ୍ୱର ଶୁଆଶାରୀଙ୍କର ସ୍ୱରଠାରୁ ମଧ୍ୟ ମଧୁର ।

କଂସ ଆମ୍ଭମାନଙ୍କ ପ୍ରତି ଅନେକ ହିଂସା କରି ଶେଷରେ ନିଜେ ମଲା । ମୁଁ କୃଷ୍ଣ ଦେହରେ କୁଙ୍କୁମ ବୋଳିଦିଏଁ; ବଳରାମ ତାକୁ ଖେଳାଉ ଥାନ୍ତି । ଛୋଟ ବୟସରୁ କ୍ଷୀର ଦେଇ ମୁଁ ତାକୁ ବଢ଼ାଇଥିଲି; ମାତ୍ର ଏ ବାର୍ଦ୍ଧକ୍ୟ ଅବସ୍ଥାରେ ତାକୁ ଦେଖି ପାରିଲି ନାହିଁ । ଥରେ ମୁଁ ତାକୁ ଦଉଡ଼ିରେ ବାନ୍ଧିଥିଲି; ସେହି ରାଗରେ ସେ ମଥୁରାକୁ ଚାଲିଗଲା କି ? ଦେବକୀ ନିଶ୍ଚୟ ଧନ୍ୟ । ଶେଷରେ କୃଷ୍ଣ ତାହାର ପୁତ୍ର ହୋଇ ରହିଲା । ମୁଁ କୃଷ୍ଣର ମୁହଁକୁ ଚାହିଁ ନିଜକୁ ପବିତ୍ର କରୁଥିଲି । ଏବେ ମୋର ସବୁ ଆଶା ବ୍ୟର୍ଥ ହେଲା । ମୋର ଇଚ୍ଛା ହେଉଛି ଯେ ଏହିକ୍ଷଣି ମଥୁରାକୁ ଦଉଡ଼ି ଯାଇ କୃଷ୍ଣକୁ ନେଇ ଆସନ୍ତି । କୃଷ୍ଣ ମଥୁରା ଯିବା ଦିନୁ ନନ୍ଦ ଅସ୍ଥିର ହେଉ ଅଛନ୍ତି । ଅନ୍ଧାର ପକ୍ଷର ଚନ୍ଦ୍ର ପରି ସେ ଦିନକୁ ଦିନ କ୍ଷୀଣ ହୋଇ ଯାଉଅଛନ୍ତି । ଇନ୍ଦ୍ର କୋପକରି ସାତଦିନ ପର୍ଯ୍ୟନ୍ତ ଗୋପପୁର ଉପରେ ବର୍ଷଣ ବୃଷ୍ଟି କଲା । ମାତ୍ର ସାତବର୍ଷର ମୋ ପୁଅ କୃଷ୍ଣ ମନ୍ଦର ପର୍ବତକୁ ଟେକି ଧରି ଗୋପପୁରବାସୀଙ୍କୁ ରକ୍ଷା କଲା । ଥରେ କୃଷ୍ଣ ହାଇ ମାରିଲା । ସେତେବେଳେ ତାର ଉଦରରେ

ମଧ୍ୟରେ ମୁଁ ସପ୍ତବ୍ରହ୍ମାଣ୍ଡ ଦେଖିବାକୁ ପାଉଛୁ । ଏପରି ଗୁଣବନ୍ତ ପୁଅ ଗୁହ୍ନପିବାକୁ ମୁଁ ଅଧୀର ହେଉଅଛୁ ।

**ଟିପ୍ପଣୀ**—ସାତ ବରଷର ପୁଅ ମନ୍ଦର ଧରିଲୁ । ଇନ୍ଦ୍ର ଦେବତାମାନଙ୍କର ରାଜା । ନନ୍ଦ ତାଙ୍କର ପୂଜା ନ କରିବାରୁ ସେ କ୍ରୁଦ୍ଧ ହୋଇ ଗୋପପୁର ଉପରେ ପ୍ରଚଣ୍ଡ ବୃଷ୍ଟି କଲେ । କୃଷ୍ଣ ଅଙ୍ଗୁଠି ଅଗରେ ମନ୍ଦର ପର୍ବତକୁ ଟେକିଧରି ରଖିଲେ ଓ ତା ତଳେ ଗୋପପୁର ବାସୀ ନିରାପଦରେ ରହିଥିଲେ ।

"ହୃଦରେ ଦଶିଲୁ ତାର ସପତ ବ୍ରହ୍ମାଣ୍ଡ ।"

ସ୍ୱୟଂ ଭଗବାନ ଦୁଷ୍ଟ ଦମନ ଓ ଶିଷ୍ଟ ପାଳନ କରିବା ପାଇଁ ଦେବକୀ ଗର୍ଭରେ କୃଷ୍ଣ ରୂପେ ଜନ୍ମିଥିଲେ । ବସୁଦେବ ତାଙ୍କୁ ନେଇ ନନ୍ଦଙ୍କ ଘରେ ଛାଡ଼ି ଦେଇଥିଲେ । ନନ୍ଦ ଓ ତାଙ୍କ ରାଣୀ ଯଶୋଦା ତାଙ୍କୁ ନିଜ ପୁତ୍ର ପରି ପାଳିଥିଲେ । ଥରେ ସେ ହାଇ ମାରିବା ସମୟରେ ଯଶୋଦା ଦେଖିଲେ ଯେ ତାଙ୍କ ହୃଦୟ ମଧ୍ୟରେ ସପ୍ତ ବ୍ରହ୍ମାଣ୍ଡ ବିଦ୍ୟମାନ । ଏହାଦ୍ୱାରା କୃଷ୍ଣଙ୍କର ମାହାତ୍ମ୍ୟ ପ୍ରକଟିତ ହେଲା ।

---

## (୩) ବର୍ଷା ଓ ଶରତ୍ ବର୍ଣ୍ଣନା

### (୰ ଜଗନ୍ନାଥ ଦାସ)

**କବି ପରିଚୟ**—ଜଗନ୍ନାଥ ଦାସଙ୍କର ଓଡ଼ିଆ ଭାଗବତ ଓଡ଼ିଶାର ଘରେ ଘରେ ପରିଚିତ । ତାଙ୍କ ପିତାଙ୍କର ନାମ ଭଗବାନ ପୁରୁଣା ପଣ୍ଡା ଓ ମାତାଙ୍କର ନାମ ପଦ୍ମାବତୀ । ପୁରୀ ଜିଲ୍ଲାର କପିଳେଶ୍ୱର ପୁର ତାଙ୍କର ଜନ୍ମସ୍ଥାନ । ସେ ଜାତିରେ ବ୍ରାହ୍ମଣ ଥିଲେ । ପରେ ଶ୍ରୀଚୈତନ୍ୟଙ୍କ ଦ୍ୱାରା ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇଥିଲେ । ସେ ଚୈତନ୍ୟଦେବଙ୍କର ଜଣେ ପରମ ଭକ୍ତ ଥିଲେ ଏବଂ ତାଙ୍କଠାରୁ 'ଅତିବଡ଼ୀ' ଉପାଧି ପାଇଥିଲେ ।

ଶିକ୍ଷା ଭାଗବତ ଟୀକା ସେ ଓଡ଼ିଆ ମହାଭାରତ, ସୂକ୍ଷ୍ମ ଭାଗବତ, ଅର୍ଥ କୋଇଲି, ପାଷାଣ୍ଡ ଦଳନ ପ୍ରଭୃତି ଅନେକ ପୁସ୍ତକ ଲେଖି ଯାଇଅଛନ୍ତି । ସେ ପଞ୍ଚଦଶ ଶତାବ୍ଦୀର ଶେଷଭାଗ ଓ ଷୋଡ଼ଶ ଶତାବ୍ଦୀର ପ୍ରଥମ ଭାଗରେ ଜୀବିତ ଥିଲେ ।

ଏହି ବର୍ଷା ଓ ଶରତ୍ ଋତୁ ବର୍ଣ୍ଣନା ତାଙ୍କ ଓଡ଼ିଆ ଭାଗବତର ଦଶମ ସ୍କନ୍ଧରୁ ନିଆଯାଇଅଛି ।

**ଶବ୍ଦାର୍ଥ**—(ପୃ ୭) ସାର—ଶ୍ରେଷ୍ଠ; ମହୀ—ପୃଥିବୀ; ଜୀମୂତ (ଜୀବର ମୂତ) ଅର୍ଥାତ୍ ଜଳର ଆଧାର, ମେଘ; ଅବନ୍ତ୍ୟ (ଅଦନ+ଅପତ୍ୟାର୍ଥରେ ଯ) ସୂର୍ଯ୍ୟ; କରୁଣାଚିତ୍ତ—ଦୟାପୂର୍ଣ୍ଣ ହୃଦୟ; (ପୃ ୮) ତପ୍ତ (ତପ୍+ତ) ତାପିତ; ଖଦ୍ୟୋତ—ଜୁଳୁଜୁଳିଆ ପୋକ; ମଣ୍ଡୂକ—ଭେକ, ବେଙ୍ଗ; ପୁଷ୍ଟ (ପୁଷ୍+ତ); ଗ୍ରସ୍ତ (ଗ୍ରସ୍+ତ); ଆଶ୍ରିତ (ଆ—ଶ୍ରି+ତ); ବ୍ୟସନ (ବି—ଅସ୍+ଅନ) ଦୁଃଖ; ଶତପତ୍ରୀ—କୁଷ୍ଠା ସ୍ତ୍ରୀ, ବ୍ୟଭିଚାରିଣୀ; ଇନ୍ଦ୍ରଚାପ—ଇନ୍ଦ୍ରଧନୁ; ବନ୍ଧନ (ବନ୍ଧ୍+ଅନ); (ପୃ ୯) ପଲ୍ଲବ—କୋମଳ ପତ୍ର; ହୃଷ୍ଟ (ହୃଷ୍+ତ); ପାଷାଣ୍ଡ—ମୂର୍ଖ; ଧର୍ମ୍ମରୁ—ଖଦ୍ୟୋତ; ଜମ୍ବୁ—ଜାମୁକୋଳି; ଅନ୍ତର୍ଯ୍ୟାମୀ—ଯେ ମନର କଥା ଜାଣନ୍ତି; ଶିଳା—ପଥର; ଭ୍ରଷ୍ଟ [ଭ୍ରଂଶ୍+ତ]; (ପୃ ୧୦) ରଜନୀନାଥ—ନିଶାପତି, ଚନ୍ଦ୍ର; ନିଶାନାଥ—ଚନ୍ଦ୍ର; (ପୃ ୧୧) ପାଟଣା—ନଗର, ବଣିଜାରୁ—ବଣିକ ।

**ସାରକଥା**—ଗ୍ରୀଷ୍ମକାଳ ପରେ ଋତୁ ଶ୍ରେଷ୍ଠ ବର୍ଷାଋତୁ ପ୍ରବେଶ କରିବାରୁ ପୃଥିବୀ ଶସ୍ୟଶ୍ୟାମଳା ହେଲା । ଆକାଶ ମେଘରେ ଆବୃତ ହେଲା; ବିଜୁଳି ଚମକିଲା ଓ ଘଡ଼ଘଡ଼ି ଶବ୍ଦ ଶୁଣାଗଲା । ସୂର୍ଯ୍ୟ ଆଠ ମାସ ଧରିରେ ପୃଥିବୀର ରସ ଶୋଷଣ କରି ନେଇଥିଲା । ଏବେ ବୃଷ୍ଟି ହେବାରୁ ପୃଥିବୀ ପୂର୍ଣ୍ଣ ସରସ ହେଲା । ମେଘମାନେ ପ୍ରାଣୀମାନଙ୍କର ଜୀବନ ସ୍ୱରୂପ ଜଳବୃଷ୍ଟି କଲେ । ତପସ୍ୱୀମାନେ ଦୀର୍ଘକାଳ ତପସ୍ୟା କଲାପରେ ଯେପରି ଫଳ ଦେଖି ଆନନ୍ଦିତ ହେଲେ, ସେପରି ମୃଗ ଆବାସମାନେ ଦୀର୍ଘ ଆଠ ମାସ ପରେ ବୃଷ୍ଟି ଜଳ ପାଇ ଆନନ୍ଦିତ ହେଲେ । ମୃଗକୋକେଳ ...

ଯୁଗରେ ଯେପରି ଯୋଗମାର୍ଗକୁ ଅବଲମ୍ବନ କରି ବେଦର ନିନ୍ଦା କରିଥାନ୍ତି ସେହିପରି ଉଜ୍ଜୁଳିଆ ପୋକମାନେ ରାତ୍ରିରେ ନିଜର ଦୀପ୍ତି ଦେଖାଇଲେ । ଭେକମାନେ ଜଳକୁ ଆଶ୍ରୟ କରି ରହିଲେ । ନଦୀମାନେ ଜଳପୂର୍ଣ୍ଣ ହୋଇ କୂଳକୁ ଲଙ୍ଘନ କଲେ । ପୃଥିବୀ ଶସ୍ୟରାଜିରେ ପୂର୍ଣ୍ଣ ହେଲା । ଛତ୍ରାକାର ଛତୁ ଫୁଟିବାରୁ ପୃଥିବୀ ଛତ୍ରଧାରୀ ରାଜାଙ୍କ ପରି ଶୋଭା ପାଇଲା । ଶସ୍ୟ-ସମ୍ଭାର ଦେଖି ଲୋକେ ଆନନ୍ଦିତ ହେଲେ । ଭଗବାନଙ୍କ ସେବାରେ ଲୋକେ ଆନନ୍ଦ ଲାଭ କଲାପରି ଜଳରେ ତଥା ସ୍ଥଳରେ ପ୍ରାଣୀମାନେ ଯଥେଷ୍ଟ ଜଳ ପାଇ ଦିନକୁ ଦିନ ପୁଷ୍ଟ ହେଲେ । କୃଷ୍ଣଙ୍କର ଆଶ୍ରିତ ପ୍ରାଣୀମାନେ କୌଣସି ବିପଦକୁ ଭୟ ନ କଲା ପରି ପର୍ବତମାନେ ବୃଷ୍ଟିଧାରକୁ ଭୟ ନ କରି ସହ୍ୟ କଲେ । ବ୍ରାହ୍ମଣ ବେଦ ବିସ୍ମୃତ ହେଲେ ଯେପରି ଅସ୍ଥିର ହୁଏ, ତୃଣପୂର୍ଣ୍ଣ ପଥରେ ପଥିକମାନେ ସେହିପରି ଅସ୍ଥିର ହେଲେ । ଗୁଣୀ ପୁରୁଷ ନିକଟରେ ବେଶ୍ୟା ସ୍ତ୍ରୀର ମନ ଚଞ୍ଚଳ ହେଲା ପରି ସର୍ବଜନହିତକାରୀ ମେଘ ନିକଟରେ ବିଜୁଳି ଅସ୍ଥିର ହେଲା । ମିଥ୍ୟା ବାକ୍ୟରେ ସତ୍ୟ ଲୁକ୍କାୟିତ ହୋଇଗଲା ପରି ଚନ୍ଦ୍ର ମେଘ ଦ୍ୱାରା ଆକାଶରେ ଲୁଚିଗଲେ । ସାଧୁ ଲୋକେ ଅତିଥି ଦେଖି ଆନନ୍ଦିତ ହେଲା ପରି ମୟୂରମାନେ ମେଘ ଦେଖି ସେହିପରି ଆନନ୍ଦିତ ହୋଇ ନୃତ୍ୟ କଲେ । ମୂର୍ଖ ଲୋକେ ବେଦ ବିହିତ ପନ୍ଥାକୁ ଅତିକ୍ରମ କଲାପରି ଜଳପ୍ରବାହ ବାନ୍ଧକୁ ଲଙ୍ଘନ କରିଗଲା । ବ୍ରାହ୍ମଣମାନଙ୍କ ଉପଦେଶରେ ରାଜାମାନେ ମୁକ୍ତ ହସ୍ତରେ ଦାନ କରିଥାନ୍ତି । ସେହିପରି ପବନ ଯୋଗେ ମେଘମାନେ ଅମୃତ ସମାନ ଜଳବୃଷ୍ଟି କଲେ । ଖଜୁରୀ ଜାମୁ ପ୍ରଭୃତି ଫଳ ଫଳିଲା । ଗାଈମାନଙ୍କ ଠାରେ ଯଥେଷ୍ଟ ଦୁଗ୍ଧ ହେଲା । ତେଣୁ ସେମାନେ କର୍ଦ୍ଦମରେ ଯିବାକୁ କଷ୍ଟ ଅନୁଭବ କଲେ । ବନ୍ୟ ଜନ୍ତୁମାନେ ଗିରି ବନକୁ ଆଶ୍ରୟ କଲେ । ଏହିପରି ବର୍ଷାଋତୁରେ କୃଷ୍ଣଚନ୍ଦ୍ର ଗୋପ ବାଳକମାନଙ୍କ ସହିତ ଗୋରୁପଲ ଘେନି ବନକୁ ବିଜେ କଲେ । ସେମାନେ ମଧୁର ଫଳ ଓ କନ୍ଦମୂଳ ଭକ୍ଷଣ କରି ବୃକ୍ଷ ମୂଳରେ ଦିନ କଟାଉଥିଲେ । ଜଳାଶୟ ନିକଟରେ ଧୂଇହେଲା ପଥର ଉପରେ ଭୋଜନ କରନ୍ତି । ଗୃହରୁ ଦହି ଓ ଅନ୍ନ ଆସିଥାନ୍ତି ।

ଗୋରୁମାନେ କୋମଳ ତୃଣ ଉପରେ ଆନନ୍ଦରେ ଶୁଅନ୍ତି । ଏହିପରି ସେମାନଙ୍କର ସମୟ ଆନନ୍ଦରେ କଟିଯାଏ ।

ବର୍ଷା କାଳପରେ ଶରତ ଋତୁ ଆସିଲା । ଆକାଶ ମେଘ ଶୂନ୍ୟ ହେବାରୁ ନିର୍ମଳ ଦେଖାଗଲା । ହରି ଭକ୍ତିଫଳରେ ପାପ ଦୂର ହେଲେ ହୃଦୟ ଯେପରି ନିର୍ମଳ ହୁଏ, ଶରଦାଗମରେ ମଳିନତା ସେହିପରି ଦୂର ହେବାରୁ ଜଳ ନିର୍ମଳ ହେଲା । ଯୋଗୀମାନେ ସଂସାର ମୋହ ତ୍ୟାଗ କଲେ ଯେପରି ଶୁଭ୍ର ହୁଅନ୍ତି, ମେଘମାନେ ଜଳମୁକ୍ତ ହେବାରୁ ସେହିପରି ଶୁଭ୍ର ଦେଖାଗଲେ । ଗୁରୁଠାରୁ ଜ୍ଞାନାମୃତ ଲାଭକରି ଶିଷ୍ୟ ସନ୍ତୁଷ୍ଟ ହେଲା ପରି ପର୍ବତରୁ ସଞ୍ଚିତ ଜଳଲାଭ କରି ପୃଥିବୀ ତୃପ୍ତ ହେଲା । କୁଟୁମ୍ବୀ ଲୋକ ଦାରିଦ୍ର୍ୟଦଶାରେ ଦିନକୁଦିନ କ୍ଷୀଣ ହୋଇଥାଏ । ସେହିପରି ଜଳଚର ପ୍ରାଣୀମାନେ ସୂର୍ଯ୍ୟ କିରଣରେ ଅଳ୍ପ ଜଳରେ କଷ୍ଟ ପାଉଥିଲେ, ଏବେ ସେମାନେ ଗଭୀର ଜଳରେ ନିଶ୍ଚିନ୍ତରେ ରହିଲେ । ଯୋଗ, ଲମ୍ବ ବଳରେ ଅଜ୍ଞାନ ନଷ୍ଟ ହେଲା ପରି ଶିଶିର ଋତୁରେ ଭୂମିରୁ ଜଳ ଓ କର୍ଦ୍ଦମ ଶୁଷ୍କ ହେଲା । ବେଦବେଦାନ୍ତର ତତ୍ତ୍ୱଲାଭ କରି ଜ୍ଞାନୀମାନଙ୍କର ହୃଦୟ ଯେପରି ନିଶ୍ଚଳ ହୁଏ ଶରତ୍ ପ୍ରଭାବରେ ସମୁଦ୍ର ସେହିପରି ନିଶ୍ଚଳ ହେଲା । ଯୋଗୀମାନେ ପ୍ରାଣାୟାମ ଇତ୍ୟାଦି ସାଧନ କରି ପବନ ବଳରେ ଯେପରି ଇନ୍ଦ୍ରିୟ ସାଧନ କରନ୍ତି, ସେହିପରି କୃଷକମାନେ ଭବିଷ୍ୟତ ଲାଗି ଶସ୍ୟ-କ୍ଷେତ୍ରରେ ଜଳ ବନ୍ଧାଇ ରଖିଲେ । ସାଧୁ ପୁରୁଷଙ୍କ ହୃଦୟରେ ନିର୍ମଳ ବ୍ରହ୍ମଦର୍ଶନର ପ୍ରକାଶ ପରି ଆକାଶରେ ଗ୍ରହ ନକ୍ଷତ୍ର ନିର୍ମଳ ଦେଖାଗଲେ । ତାରାଗଣ ମଧ୍ୟରେ ଚନ୍ଦ୍ର ପରି ଶ୍ରୀକୃଷ୍ଣ ଯଦୁବଂଶରେ ଶୋଭା ପାଉଥିଲେ । ଜଳାଶୟମାନଙ୍କରେ ପଦ୍ମ, କୁମୁଦ ପ୍ରଭୃତି ପୁଷ୍ପ ପ୍ରସ୍ଫୁଟିତ ହେଲେ । ନଗର, ଗ୍ରାମ ସବୁ ଉତ୍ସବ ହେଲା । ଶସ୍ୟବୃଦ୍ଧି ଦେଖି ଲୋକେ ଈଶ୍ୱରଙ୍କର ମାହାତ୍ମ୍ୟ ପ୍ରଶଂସା କଲେ । ବ୍ରହ୍ମଚାରୀମାନେ ବର୍ଷକ ବନବାସ କରି ଘରେ ଭୋଜନ କରନ୍ତି । ସେହିପରି ଋଷି, ରାଜା ଓ ବଣିକମାନେ ଦୀର୍ଘକାଳ ଏକ ସ୍ଥାନରେ ରହି ଶରତରେ ଆସିବାରୁ ପ୍ରବାସ ଗମନ କଲେ ।

**ଟିପ୍ପଣୀ**—"ପାଷାଣ୍ଡେ ଯେତେକେ କଳିଯୁଗେ
ବେଦ ନିନ୍ଦନ୍ତି ଯୋଗ ମାର୍ଗେ ।"

ଅତି ପ୍ରାଚୀନ କାଳରେ ଆର୍ଯ୍ୟମାନେ ବେଦ ନିର୍ଦ୍ଦିଷ୍ଟ ପନ୍ଥାକୁ ସମ୍ପୂର୍ଣ୍ଣ-ରୂପେ ପାଳନ କରୁଥିଲେ । ବୌଦ୍ଧ ଓ ତତ୍ ପରବର୍ତ୍ତୀ ଯୁଗରେ ଆର୍ଯ୍ୟମାନଙ୍କ ମଧ୍ୟରେ ଯୋଗ ପ୍ରବେଶ କଲା ଓ ବେଦ ପ୍ରତି ଲୋକଙ୍କର ଆସ୍ଥା କମି ଆସିଲା ।

"କୃଷକେ ମିଳି ଧାନ୍ୟ କ୍ଷେତେ
× × ×
ଯେତେକେ ସାଧନ୍ତି ଇଷ୍ଟକାଳେ ।"

ଯୋଗୀମାନେ ପ୍ରାଣାୟାମ ପ୍ରଭୃତି ଅଭ୍ୟାସ କରି ଶରୀର ସ୍ଥିତ ବାୟୁକୁ ଆୟତ୍ତ କରିବା ଦ୍ୱାରା ନିଜର ଇଚ୍ଛା ସାଧନ କରିଥାନ୍ତି । କୃଷକମାନେ କୃଷି କ୍ଷେତ୍ରରେ ବନ୍ଧ ଦେଇ ଜଳକୁ ରଖିବା ଦ୍ୱାରା ସେହିପରି ନିଜର ଇଚ୍ଛା ସାଧନ କରନ୍ତି ।

"ଋଷି ନୃପତି ବଣିକାରେ,
ପ୍ରବାସ କଲେ ଯେ ଯାତ୍ରାରେ ।"

ଶରତ ଋତୁରେ ବଣିକମାନେ ବାଣିଜ୍ୟ ଉଦ୍ଦେଶ୍ୟରେ ବୋଇତରେ ଯାତ୍ରା କରୁଥିଲେ । ରାଜାମାନେ ମଧ୍ୟ ପାରିଧି ଓ ଶତ୍ରୁ ବିଜୟ ଉଦ୍ଦେଶ୍ୟରେ ଯାତ୍ରା କରୁଥିଲେ । ଋଷି ଓ ତୀର୍ଥ ଯାତ୍ରୀମାନେ ବର୍ଷାକାଳରେ କୌଣସି ସ୍ଥାନରେ ଚାତୁର୍ମାସ୍ୟ ପାଳନ କରି ଶରତ ଋତୁରେ ଅନ୍ୟତ୍ର ଚାଲିଯାନ୍ତି ।

---

# (୪) ଏକଲବ୍ୟର ଗୁରୁଦକ୍ଷିଣା

## ( ୮ ସାରଳା ଦାସ )

**କବି ପରିଚୟ**—ସାରଳା ଦାସ କଟକ ଜିଲ୍ଲାର ଝଙ୍କଡ଼ ନିକଟବର୍ତ୍ତୀ ତେନ୍ତୁଳିପଦା ଗ୍ରାମରେ ଜନ୍ମିଥିଲେ । ପଞ୍ଚଦଶ ଶତାବ୍ଦୀରେ ଏହି ମହାପୁରୁଷ ଜୀବିତ ଥିଲେ । କଥିତ ଅଛି ଯେ ସେ କିଛି ପଢ଼ି ନ ଥିଲେ, ମାତ୍ର ଶାରଳା ଠାକୁରାଣୀଙ୍କ କୃପାରୁ କବିତ୍ୱ ଲାଭ କରି ମହାଭାରତ କଥାକୁ ଓଡ଼ିଆ ପଦ୍ୟରେ ଲେଖିଥିଲେ । ପୁରୀ ମୁକ୍ତିମଣ୍ଡପ ସଭାର ପଣ୍ଡିତମାନେ ତାଙ୍କର ଧର୍ମଭାବ ଓ ଈଶ୍ୱର ଭକ୍ତି ଦେଖି ତାଙ୍କୁ ଶୂଦ୍ରମୁନି ଆଖ୍ୟା ଦେଇଥିଲେ ।

**ଏକଲବ୍ୟ**—ସେ ନୀଚ କୁଳରେ ଜାତ, ଦ୍ରୋଣାଚାର୍ଯ୍ୟଙ୍କର ଶିଷ୍ୟ ହୋଇ ନ ପାରି ସେ ତାଙ୍କରି ମୂର୍ତ୍ତିକୁ ଗୁରୁରୂପେ ସ୍ଥାପନ କରି ଧନୁର୍ବିଦ୍ୟା ଶିକ୍ଷା କରିଥିଲେ ଏବଂ ସେଥିରେ ତାଙ୍କର ଶିଷ୍ୟ କୌରବ ଓ ପାଣ୍ଡବମାନଙ୍କୁ ବଳି ଯାଇଥିଲେ । ଏଣୁ ରାଜପୁତ୍ରମାନଙ୍କୁ ଦୁଃଖ ହେଲା । ଏକଲବ୍ୟ ଦ୍ରୋଣଙ୍କୁ ଗୁରୁ ଦକ୍ଷିଣା ଦେବାକୁ ଇଚ୍ଛା ପ୍ରକାଶ କରିବାରୁ ଦ୍ରୋଣାଚାର୍ଯ୍ୟ କହିଲେ, "ତୋର ଡାହାଣ ହାତ ବୁଢ଼ା ଆଙ୍ଗୁଠି ମୋତେ ଦେ ।" ଏକଲବ୍ୟ ତତ୍‌କ୍ଷଣାତ୍ ଆଙ୍ଗୁଠି କାଟି ଗୁରୁଙ୍କୁ ଦେଲେ । ଧନୁର୍ବିଦ୍ୟାରେ ସେ ସେହି ଦିନଠାରୁ ଅକର୍ମଣ୍ୟ ହୋଇ ରହିଲେ । ମାତ୍ର ଅତୁଳନୀୟ ଗୁରୁଭକ୍ତି ନିମନ୍ତେ ସେ ଚିରସ୍ମରଣୀୟ ହୋଇ ରହିଲେ ।

**ଶବ୍ଦାର୍ଥ**—ପୃ ୧୬ (୧-୨୦ ଧାଡ଼ି) ବିଦ୍ୟାପୁତ୍ରନ୍ତ—ବିଦ୍ୟାର୍ଥୀ ଶିଷ୍ୟମାନଙ୍କୁ (ଯେ ବିଦ୍ୟାଦାନ କରନ୍ତି ସେ ପଞ୍ଚପିତା ମଧ୍ୟରୁ ଅନ୍ୟତମ । ତେଣୁ ଗୁରୁ ଦ୍ରୋଣଙ୍କୁ ପିତା ଓ ଶିଷ୍ୟମାନଙ୍କୁ ତାଙ୍କର ପୁତ୍ରରୂପେ ଗ୍ରହଣ କରାଯାଇଅଛି । ପୁତ୍ର ଶବ୍ଦର ବହୁବଚନ ରୂପେ 'ପୁତ୍ରନ୍ତ' ଶବ୍ଦ ବ୍ୟବହୃତ । ପ୍ରାଚୀନ ଓଡ଼ିଆରେ 'ନ୍ତ' ବହୁବଚନର ଚିହ୍ନରୂପେ ବ୍ୟବହୃତ ହେଉଥିଲା) ହୁକାରି-ଡାକି, ହେରି—ଦେଖିବାକୁ, ଅଶ୍ୱତ୍ଥମା—ଅଶ୍ୱତ୍ଥାମା, ଦ୍ରୋଣଙ୍କ

ପୁତ୍ର ; କୃପୀ—ଦ୍ରୋଣଙ୍କ ପତ୍ନୀ ଓ ଅଶ୍ୱତ୍ଥାମାଙ୍କ ମାତା । ତନ୍ତ୍ର—ତନ୍ତ୍ର ଅର୍ଥାତ୍ ଶିକ୍ଷା, ପଶ୍ଚମେ ( ପଶ୍ଚିମ ଶବ୍ଦରୁ ), ସୋଦର ( ସମାନ ଉଦର ଯାହାର, ବନ୍ଧୁବାନ୍ଧବ, ସହୋଦର ମଧ୍ୟ ହୁଏ) ଭାଇ; ସୋଦରନ୍ତ—ଭାଇମାନଙ୍କୁ, କୁମର—ପୁତ୍ର, ଖେଦନ୍ତି—ତଡ଼ନ୍ତି, ମୃଗାଣ୍ଡ ( ମୃଗର ଅଣ୍ଡ ) ପିଣ୍ଡ, ଛତ୍ରାକାଇ—ଗୋଟିଏ ଝୁଡ଼ା ଛତ୍ରରୁ, ସାଧେବ—ସାଧେନ୍ତୁ, ସାଧ୍ୟାଙ୍କ ପାଳିତ ପୁତ୍ର କର୍ଣ୍ଣ; ଉଖୁରକାଇ—ଉଖୁରରୁ, ଗନ୍ଧନା—ନିବନ୍ଧ, ଅରଣ୍ୟେଣ—ଅରଣ୍ୟରେ, ଦୁର୍ଦ୍ଧର୍ଷ—ଦୁର୍ଦ୍ଧର୍ଷ, ଦୁର୍ଦ୍ଧର୍ଷ ( ପୃ୯୬ଷ୍ଠା, ୬୧-୬୦ଧାଡ଼ି) ନାମେଣ—ନାମରେ; ପକ୍ଷୀ—କୁଡ଼ଅ ଘର, କ୍ଷୁଣ୍ଣି ଦେଇ ଥାଅନ୍ତି—ଗୃହଁ ଥାଅ । ( ସଂସ୍କୃତରେ ମଧ୍ୟମ ପୁରୁଷରେ ଧାତୁ ସହିତ 'ସି' ଯୋଗ ହୋଇ କ୍ରିୟା ଗଠିତ ହୋଇଥାଏ, ଯଥା, ଗଚ୍ଛସି, ହସସି । ତାହାର ଅନୁକରଣରେ 'ସି'ର ଓଡ଼ିଆରେ ବ୍ୟବହାର), ସ୍ନାହାନ-ସ୍ନାନ, ତଲେ (ତଳସ୍ଥ ଶବ୍ଦରୁ) ତଳେ କରଥାଅ—ଲମ୍ବ ରଖିଥାଅ, ସ୍ୱାମିକଇ—ସ୍ୱାମିରୁ, ପ୍ରବୋଧି—ବୁଝାଇ, ଶବରଣୀ—ଶବରୀ, ସରୋବର (ସରଃ+ବର) ପୋଖରୀ, ଝାଡ଼—କୂଳ, ପରିହରଣ—ପରିଧାନ, ପିନ୍ଧିବା, (ଶବରମାନେ ପତ୍ର ପିନ୍ଧୁଥିଲେ) । ଠାଣି—ଭଙ୍ଗି, ଆଗୁଡ଼ା—(ଆକୃତି ଶବ୍ଦରୁ) ମଲ୍ଲବିଦ୍ୟା ବା ଅସ୍ତ୍ରବିଦ୍ୟାଶିକ୍ଷା, କରାତି (କର—ଅତ+ଅ) ଶବର, ବିକଟାଳ—( ବିକରାଳ ଶବ୍ଦରୁ ) ଭୟଙ୍କର, ଭୈରବ—ଭୟଙ୍କର; ଜାହାର ଜତ ଅଛ—ଜାହା ପାଖରେ ଥାଅ, (ପୃ୮ ଷ୍ଠା ୪୧—୬୨ ଧାଡ଼ି, କାଚ—କାଚ; ଶବରି-ଶବର (ଅନାଦର ଅର୍ଥରେ ଅ); ସୋମବଂଶ—ଚନ୍ଦ୍ରବଂଶକୁ, ପ୍ରାଣ କ୍ଷତ ହେବୁ—ପ୍ରାଣ ହରାଇବୁ, ବେଣ୍ଟକାର—ଶିକାରୀ (ବେଣ୍ଟ—ଶିକାର), ଆକ୍ରୋଷିଣ—ଆକର୍ଷଣ କରି, ଟାଣି, ଏକ ଉତ୍ତର ଶତେକ—ଶହେ ଏକ, ମୂର୍ଚ୍ଛାଇଲି—ଆଚ୍ଛାଦନ କଲି, ଅବକ୍ଷଣ—ଅନବରତ, ତିପଣ୍ଡ—ଅତ୍ୟନ୍ତ, ରୁଧିର—ରକ୍ତ, କରେଣକେ—ନାରୂପଣ (ଘୁଷି) କଦବାରେ; କରୀଟୀ ( କରୀଟ+ଅଛି ଅର୍ଥରେ ଇନ୍) ଅର୍ଜୁନ, (ପୃ ୧୧ ଷ୍ଠା ୬୩—୮୭ ଧାଡ଼ି), ନାଚିଜ—ନାରଚ, ଶର, ହୁଦୋଶ ପଡ଼ି ପିଠି କଟକ ପ୍ରତି ପୁଡ଼ୁରେ କର୍ଣ୍ଣି ଝାନ୍ତୁ—ଝାନ୍ତରେ ପଶି, ପିଠିରେ ପୃଷ୍ଠ

ଭୂମିକୁ ଦେଖିଅଛୁ, ଭରଦ୍ୱାଜଙ୍କ ନନ୍ଦନ—ଦ୍ରୋଣାଚାର୍ଯ୍ୟ, ବନମଧ୍ୟେ—ବଣରେ, ଫାଲ୍‌ଗୁନ—ଅର୍ଜୁନ, ପରଶୁରାମ—ଜମଦଗ୍ନିଙ୍କ ପୁତ୍ର, ସେ ବ୍ରାହ୍ମଣ ହେଲେହେଁ ପରାକ୍ରାନ୍ତ ବୀର ଥିଲେ ଏବଂ ଏକୋଇଶ ଥର କ୍ଷତ୍ରିୟମାନଙ୍କୁ ଧ୍ୱଂସ କରିଥିଲେ, ସବ୍ୟସାଚୀ (ସବ୍ୟ—ସଚ୍‌+ଇନ୍‌) ଅର୍ଜୁନ, ପଥ୍ୟାରୁ—ଲକ୍ଷ୍ୟ ବା ଶର ମାରିବା ସ୍ଥାନକୁ, ମେଖଳା—ଅଣ୍ଟାର ପଟି, ଭିନ୍ଦିପାଳ—ଏକ ପ୍ରକାର କଣ୍ଟା, କୋଣ୍ଡ (ତୂଣୀର ଶବ୍ଦରୁ) ଶରରଖିବାର ତୂଣି, ବନଚର—ଶବର (ବାନେଚର ମଧ୍ୟ ହୁଏ) ଅଣ୍ଟା—ଅଣ୍ଟା, ପହ୍ଲାଇ—ପାଲୁ ଦେବଣ୍ଡା, ଭୂରୁ—ଡୋଡେ (ସେହିପରି ମୂକୁ—ମୋତେ), ଭ୍ରାଥନ୍ତ—ଭ୍ରାତାମାନଙ୍କୁ, ( ପୃ ୨୦ସ୍ଥା, ୯୭—୧୧୦ ଧାଡ଼ି ) ପରନ୍ତାପ—ପ୍ରତାପରେ, କୋରରେ, ଦବ୍ୟ ସହସ୍ର—ଦିବ୍ୟାସ୍ତ୍ର—(ସହସ୍ର—ଅସ୍ତ୍ର), ଅନାଅନ (ଅନ୍ୟୋନ୍ୟ ଶବ୍ଦରୁ) ପରସ୍ପରର ସମ୍ମାନ, ଶସ୍ତ୍ର ବଘାତେଣ—ଶସ୍ତ୍ରର ଆଘାତରେ, ଘାଏ—ଘାତରେ, ଗରୁ ଘୋଷ—ଦ୍ୱିତୀୟ ଶବ୍ଦ (ଗରୁ—ଗୁରୁ), ନିବୃତନକଇ—ନିବୃତ୍ତ କରାଇ, ବାସ (ବସ୍‌+ଅ) ଉପୁ, ଅନ୍ୟାଅନ—ଅନ୍ୟୋନ୍ୟ ପରସ୍ପର, ଅର୍ଥାତ୍‌ ସେ ଯୁଦ୍ଧରେ ତାଙ୍କୁ ପଥ ଏକାକୀ, ଅନ୍ୟ କେହି ତାଙ୍କୁ ସାହାଯ୍ୟ କରୁ ନ ଥିଲେ; ( ପୃ ୨୧ସ୍ଥା, ୧୧୧—୧୩୪ ଧାଡ଼ି ), ହାଦେ—ସହଜରେ, ପ୍ରମ୍ପାଭୂତ (ପ୍ରମ୍‌+ଅଭି-ଭେଦ୍‌ ଭୂଦେ ତ୍‌—ଭୂ+ତ) ଅସ୍ତ୍ରାଘାତ, ବାଦ୍ୟମାନେ—ଉପସ୍ଥିତ, ବାଦନ୍ତ—ବଜାନ୍ତି, ଆଖଡାଶାଳ—ମଲ୍ଲବିଦ୍ୟା ଶିକ୍ଷିବା ସ୍ଥାନ, ପ୍ରଭା—ପ୍ରଭା, ପ୍ରଚ୍ଛାଦଲେ—ପଗୁରିଲେ, ଯୁଦ୍ଧଶ୍ରେଷ୍ଠ—ଯୁଦ୍ଧଶ୍ରେଷ୍ଠ, ଲଟା—ଜଙ୍ଗଲ, କେଅଇଲ—ବୋଲାଇ ଦଲ, ମୃତ୍ତିକା ଦ୍ରୋଣ—ମାଟିର ଦ୍ରୋଣମୂର୍ତ୍ତି, ଓପଦଣ—ପେଦଣ, ପେଠର୍‌ (ପୃ୨୨ ସ୍ଥା ୧୩୫—୧୪୮ ଧାଡ଼ି) ସନ୍ନିଧେ—ପାଖରେ, ପ୍ରଣପତ୍ୟ—ପ୍ରଣାମ, ସୁତମାନନ୍ତ—ସୁତମାନଙ୍କୁ, ଯୁଗତେ—ନ୍ୟାୟତଃ, ଉପଯୁକ୍ତରୂପେ, ଜୀବନ୍ତ—ପ୍ରାଣ ପାଅନ୍ତି, ଜାଗିବଇ—ଜାଗିବୁ, ଏକଲବ୍ୟରୁ, ଧୃତରାଷ୍ଟ୍ର କୁମାର—ଦୁର୍ଯ୍ୟୋଧନ, ପରଶାମ୍ମି—ପ୍ରଣାମ କରି, ସଂଗ୍ରାମ—(ସମ୍‌—ଗ୍ରାମ+ଅ) ଯୁଦ୍ଧ, ଖତ୍ରୀ କୁକ୍ଷେତ୍ର—କ୍ଷତ୍ରିୟ କୁଷେତ୍ରେ ଅର୍ଥାତ୍‌ ଯୁଦ୍ଧ କ୍ଷେତ୍ରେ

ଅଂଖ୍ୟାତ (ଅପ—ଖ୍ୟା+ତ) ନିନ୍ଦା, [ ପୃ୨୩ଷ୍ଠା,—୧୬୯—୧୭୨ ] ନିର୍ଭ୍ରାନ୍ତ—ନିର୍ଭୟରେ, ମୁକ୍ତ—ମୋଚ୍ଛେ, କହଣା—କଥା, ଶିର-ମଥା, ଢଷ୍ଟୁଣ (ବର୍ଣ୍ଣୀ ଶବ୍ଦରୁ) ଯୁଦ୍ଧ କାଳରେ ଅଘାତରୁ ରକ୍ଷା ପାଇଁ ଅଙ୍ଗୁଳିରେ ଲଗାଇବା ଦସ୍ତାନା, ମୁକୁଇ କଳଙ୍କ କଲ—ମୋତେ କଳଙ୍କିତ କଲ; [୨୪ ପୃଷ୍ଠା, ୧୮୩—୧୮୮ ଧାଡ଼ି] କଲ୍ୟାଣ—ଆଶୀର୍ବାଦ, କୁରବଳ—କୁରୁବଂଶ, ରଖାଇଲେ—ରଖାଇଲେ (ରଖ୍ ଧାତୁର ପ୍ରେରଣାର୍ଥ) ଶିଷ୍ୟନ୍ତ—ସୁତ ବା ଶିଷ୍ୟମାନଙ୍କୁ ।

**ସାରକଥା**—ଦିନେ ଦ୍ରୋଣାଚାର୍ଯ୍ୟ ନିଜର ଶିଷ୍ୟ କୌରବ ଓ ପାଣ୍ଡବମାନଙ୍କୁ ଡାକି ଗୋଟିଏ ଗଣ୍ଡା ଆଣିବାକୁ କହିଲେ । ଭୀମ ଓ ଅର୍ଜୁନ ପଶ୍ଚିମକୁ, କର୍ଣ୍ଣ ଦକ୍ଷିଣକୁ ଏବଂ ଦୁର୍ଯ୍ୟୋଧନ ତାଙ୍କ ଭାଇମାନଙ୍କ ସହିତ ଉତ୍ତରକୁ ଗଲେ । କର୍ଣ୍ଣ ଗଣ୍ଡା ନ ପାଇ ଗୋଟିଏ ହରିଣ ଧରି ଗୁରୁଙ୍କ ନିକଟରେ ପହଞ୍ଚିଲେ, ପାଞ୍ଚ ଦିନ ପରେ ଭୀମ ଓ ଅର୍ଜୁନ ଦୁଇଟି ଗଣ୍ଡା ନେଇ ଆସିଲେ । ଦୁର୍ଯ୍ୟୋଧନ ଓ ତାଙ୍କର ଭାଇମାନେ ଅନେକ ସ୍ଥାନ ବୁଲି ବୁଲି ମଣିନାଗପର୍ବତ ନିକଟରେ ପହଞ୍ଚିଲେ । ସେ ପର୍ବତର ପାଦଦେଶରେ ଗୋଟିଏ ପାଣିଘାଟ ଥିଲା । ତା ପାଖରେ ଗୋଟିଏ ଶବରର କୁଡ଼ିଆ । ଶବରର ସ୍ତ୍ରୀ ପାଣିଘାଟକୁ ସ୍ନାନ କରି ଆସୁଥିଲା । ଦୁର୍ଯ୍ୟୋଧନ ପ୍ରଭୃତି ସେହି ଶବରୀ ପ୍ରତି ଦୁର୍ବ୍ୟବହାର ଦେଖାଇବାରୁ ସେ ସ୍ୱାମୀକୁ ଡାକିଲା । ସେ ଶବରର ନାମ ଏକଲବ୍ୟ । ସେ ଭୀଷଣ ମୂର୍ତ୍ତି ଧରି କୌରବମାନଙ୍କ ନିକଟରେ ପହଞ୍ଚିଲା । ଦୁଃଶାସନ ତାକୁ ନାନାପ୍ରକାର ଗାଳି ଦେଲେ । ତହୁଁ ସେ ଧନୁଶର ନେଇ ପ୍ରଥମେ ଗୁରୁଙ୍କୁ ସ୍ମରଣ କଲା ଓ ଗୋଟିଏ ଶର ଭୂମିକୁ ମାରିଲା । ତା ପରେ ଏପରି ଭାବରେ ଶର ବୃଷ୍ଟି କଲା ଯେ ଏକ ଶହ ଏକ କୌରବ ସମସ୍ତେ ଶତ ଶତ ଶରରେ ଆଚ୍ଛନ୍ନ ହୋଇ ପଡ଼ିଲେ । କୌରବମାନଙ୍କୁ ବନାଶକରି ଶବର ସ୍ତ୍ରୀ ସହିତ ଗୃହକୁ ଗଲା ।

ଦୁର୍ଯ୍ୟୋଧନ ପ୍ରଭୃତି କୌରବମାନେ ନ ଫେରିବାରୁ ଅର୍ଜୁନ ଓ ଅନ୍ୟମାନଙ୍କୁ ସଙ୍ଗରେ ନେଇ ଦ୍ରୋଣ ସେମାନଙ୍କୁ ଖୋଜିବାକୁ ଗଲେ ।

ବାରଦିନ ପରେ ସେମାନେ ଗୋଟିଏ ସ୍ଥାନରେ ପହଞ୍ଚି ଦେଖିଲେ ଯେ, କୌରବମାନେ ମରି ପଡ଼ିଅଛନ୍ତି । ଅସ୍ତ୍ରର ଆଘାତକୁ ଦ୍ରୋଣ ବୁଝି ପାରିଲେ ଯେ, ଏପରି ଶର ମାରିବା ବିଦ୍ୟା କେବଳ ସେ ଓ ପର୍ଶୁରାମ ଜାଣନ୍ତି । ତେବେ କୌରବମାନଙ୍କୁ ମାରିଲା କିଏ ? ଅର୍ଜ୍ଜୁନ ଅନୁସନ୍ଧାନ କରି ଏକଲବ୍ୟକୁ ଦେଖି ତାକୁ ପଚାରିଲେ, "ମୋର ଏ ଭାଇମାନଙ୍କୁ କିଏ ମାରିଲୁ ?" ଶବର ରାଗାନ୍ୱିତ ହୋଇ ଅର୍ଜ୍ଜୁନଙ୍କୁ ଶର ନିକ୍ଷେପ କଲା । ଅର୍ଜ୍ଜୁନ ମଧ୍ୟ ତାହା ଉପରକୁ ଶର ମାରିଲେ । ଦୁହିଁଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ହେଲା । ଅସ୍ତ୍ର ଶସ୍ତ୍ରର ଧ୍ୱନିରେ ପୃଥିବୀ କମ୍ପି ଉଠିଲା । ଦ୍ରୋଣ ଏହି ଶବ୍ଦ ଶୁଣି ଭୀମ ଓ କର୍ଣ୍ଣଙ୍କୁ ଘେନି ସେଠାରେ ପହଞ୍ଚିଲେ ।

ଅର୍ଜ୍ଜୁନ ଓ ଏକଲବ୍ୟଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ହେଉଥିବାର ଦେଖି ଦ୍ରୋଣ ସେମାନଙ୍କୁ ନିବାରଣ କଲେ ଓ ଏକଲବ୍ୟକୁ ପଚାରିଲେ, "ତୁ କାହାର ଶିଷ୍ୟ, କାହାଠାରୁ ବିଦ୍ୟା ଶିଖି ଏପରି ଯୁଦ୍ଧ କରୁଛୁ ?" ଶବର କହିଲା, "ଦ୍ରୋଣ ମୋର ବିଦ୍ୟାଗୁରୁ ଅଟନ୍ତି ।" ଏହା ଶୁଣି ଦ୍ରୋଣ ସ୍ତମ୍ଭୀଭୂତ ହୋଇଗଲେ । ସେ ଶବରକୁ କହିଲେ, "ଆଚ୍ଛା, ତୁ ମୋତେ ତୋର ଗୁରୁଙ୍କୁ ଦେଖା ।" ତହୁଁ ଶବର ଦ୍ରୋଣଙ୍କୁ ଆଖଡ଼ାକୁ ନେଇ ମାଟିର ଦ୍ରୋଣ ମୂର୍ତ୍ତି ଦେଖାଇ ଦେଲା । ଦ୍ରୋଣ ପଚାରିଲେ, "ତୁ କିପରି ଶସ୍ତ୍ର ବିଦ୍ୟା ଶିକ୍ଷା କରି ଏତେ ପାରଦର୍ଶୀ ହେଲୁ ଯେ, ମୋର ଶିଷ୍ୟମାନଙ୍କୁ ମାରିଦେଲୁ ।" ଶବର କହିଲା, "ମୁଁ ଦ୍ରୋଣଙ୍କ ନିକଟକୁ ଯୁଦ୍ଧବିଦ୍ୟା ଶିଖିବାକୁ ଯାଇଥିଲି । ଯୁଧିଷ୍ଠିରଙ୍କ ଅନୁରୋଧରୁ ସେ ମୋତେ ଶିଷ୍ୟରୂପେ ଗ୍ରହଣ କରିବାକୁ ସ୍ୱୀକୃତ ହୋଇଥିଲେ, ମାତ୍ର ଦୁର୍ଯ୍ୟୋଧନଙ୍କ କଥାରେ ସେ ମୋତେ ତଡ଼ି ଦେଲେ । ସେହି ଅପମାନରେ ମୁଁ ବାରୁଣାବନ୍ତଠାରୁ ଏ ପର୍ଯ୍ୟନ୍ତ ବଣ କାଟି ଏହି କୁଡ଼ିଆ ପାଖରେ ଗୋଟିଏ ଆଖଡ଼ା କଲି । ଏହିଠାରେ ରହି ମୁଁ ବାରୁଣାବନ୍ତ ଆଖଡ଼ାକୁ ଚାହିଁ ଥାଏ । ଗୁରୁ ଦ୍ରୋଣ ସେଠାରେ ତାଙ୍କ ଶିଷ୍ୟମାନଙ୍କୁ ଯେପରି ଅସ୍ତ୍ର ଶିକ୍ଷା ଦିଅନ୍ତି ମୁଁ ସେହିପରି ସାଧନା କରେ ।" ଏହା ଶୁଣି ଦ୍ରୋଣ ଆନନ୍ଦିତ ହୋଇ ଏକଲବ୍ୟକୁ ପାଖରେ ବସାଇ ନିଜର ଓ ଅନ୍ୟମାନଙ୍କର ପରିଚୟ ଦେଲେ ।

ଉପୃରେ କହିଲେ, "ଯେଉଁମାନଙ୍କୁ ନାଶ କରିଅଛୁ ସେମାନେ ମୋର ଶିଷ୍ୟ, ତୋର ଗୁରୁଭାଇ । ସେମାନଙ୍କୁ ପ୍ରାଣଦାନ କଲେ ତୋର ଶବ୍ଦବେଧି ପରୀକ୍ଷା ହେବ ।" ଗୁରୁଙ୍କ ଆଦେଶରେ ଶବର ଜୀବନ୍ୟାସ ଶର ମାରିବାରୁ ଦୁର୍ଯୋଧନ ପ୍ରଭୃତି କୌରବମାନେ ପ୍ରାଣ ପାଇ ଉଠିଲେ । ଦୁର୍ଯୋଧନ ଦ୍ରୋଣଙ୍କୁ କହିଲେ, "ଆପଣଙ୍କ ପରି ଗୁରୁ ପାଇ ଏତେ ବିଦ୍ୟା ଶିଖି ଆମ୍ଭେମାନେ ଏହି କ୍ଷୁଦ୍ର ଶବରର ଦ୍ୱାରା ନିହତ ହେଲୁ । ଆମ୍ଭମାନଙ୍କ ଧିକ । ସଂସାରରେ ଆମ୍ଭର କେବଳ ଅଖ୍ୟାତି ହେବ ।"

ଦ୍ରୋଣ ସେମାନଙ୍କୁ ଆଶ୍ୱାସନା ଦେଇ ହସ୍ତିନାକୁ ଫେରିଯିବାକୁ ବସିଲେ । ଏକଲବ୍ୟ ଦ୍ରୋଣଙ୍କୁ ପ୍ରାର୍ଥନା କଲା, "ଆପଣ ମୋର ଅସ୍ତ୍ରଗୁରୁ । ମୋଠାରେ ଗୁରୁଦକ୍ଷିଣା ମାଗନ୍ତୁ ।" ଦ୍ରୋଣ ତାହାକୁ ସତ୍ୟ କରାଇ କହିଲେ, "ମୋତେ ତୋର ଡାହାଣ ହାତର ବୃଦ୍ଧା ଅଙ୍ଗୁଠିଟି ଦେ ।" ଏକଲବ୍ୟ ତତ୍‌କ୍ଷଣାତ୍ ସେହି ଅଙ୍ଗୁଠିଟି କାଟି ଗୁରୁଙ୍କୁ ଅର୍ପଣ କଲା ।

ସେ ବୁଝିପାରିଲା ଯେ, କୌରବ ଓ ପାଣ୍ଡବମାନଙ୍କର ବଡ଼ପଣ ରକ୍ଷିବା ପାଇଁ ଗୁରୁଦ୍ରୋଣ କପଟରେ ତାକୁ ଅସ୍ତ୍ରବିଦ୍ୟାରେ ଅକର୍ମଣ୍ୟ କରିଦେଲେ । ଦ୍ରୋଣ ଏକଲବ୍ୟର ଗୁରୁଭକ୍ତିରେ ଅତ୍ୟନ୍ତ ପ୍ରୀତ ହୋଇ ତାକୁ ଆଶୀର୍ବାଦ କଲେ ଓ ଶିଷ୍ୟମାନଙ୍କ ସହିତ ହସ୍ତିନାପୁରକୁ ଫେରିଗଲେ ।

---

## (୮) କଂସର ଚିତାଉ

### ( କବି—ଭକ୍ତଚରଣ ଦାସ )

କବି ପରିଚୟ—ମଥୁରା ମଙ୍ଗଳର ରଚୟିତା ଭକ୍ତଚରଣ ଦାସ ପୁରୀ ଜିଲ୍ଲାର ଧୂନାଗଳା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପ୍ରକୃତ ନାମ ବୈରାଗୀଚରଣ ପଟ୍ଟନାୟକ । ବୈଷ୍ଣବ ଧର୍ମ ଗ୍ରହଣ କରି ସେ ଭକ୍ତ-ଚରଣ ଦାସ ନାମ ଧାରଣ କରିଥିଲେ । ସେ ଅଷ୍ଟାଦଶ ଶତାବ୍ଦୀରେ ଜୀବିତ ଥିଲେ । ମଥୁରାମଙ୍ଗଳ ଛଡ଼ା ସେ କଳାକଳେବର, ମନବୋଧ ଚଉତିଶା

"ଏ ପତ୍ର ପାଇବା ମାତ୍ରେ ତୁ ଶୀଘ୍ର ମଥୁରାକୁ ଆସିବୁ, ନଚେତ୍, ତୋର ଶିରଚ୍ଛେଦ କରିବ । ମୋର ପ୍ରତାପରେ ପୃଥିବୀ କମ୍ପିଉଠେ । ସ୍ୱୟଂ ଯମରାଜ ମୋତେ ଭୟ କରନ୍ତି । ମୁଁ ଦାତାପଣରେ ଇନ୍ଦ୍ର, ଗାମ୍ଭୀର୍ଯ୍ୟରେ ସମୁଦ୍ର, ପାଣ୍ଡିତ୍ୟରେ ବୃହସ୍ପତି, ବେଦବେଦାନ୍ତରେ ବ୍ରହ୍ମାଙ୍କୁ ଜୟ କରିଅଛି । ପ୍ରଜାପାଳନ ବିଷୟରେ ମୁଁ ସମସ୍ତଙ୍କର ପିତା ସମାନ । ମୋ ରାଜ୍ୟରେ କାହୁଁ ମୋତେ ଭୟ କରି ବେଗରେ ବହେ ନାହିଁ । ମୋର ତେଜକୁ ଦେଖି ଅଗ୍ନିର ଶିଖା ମଳିନ ହୋଇଯାଏ । ମୁଁ ସୁଜନମାନଙ୍କର ରକ୍ଷକ ଓ ଦୁର୍ଜନମାନଙ୍କର ଶତ୍ରୁ । ମୋର ରଣ ଶୁଣି ଶତ୍ରୁମାନେ ଦୂରରୁ ପଳାଇ ଯାଆନ୍ତି । ମୁଁ ଯୁଦ୍ଧଯାତ୍ରା କଲେ ଦେବତାମାନେ ସ୍ୱର୍ଗପୁର ଛାଡ଼ି ପଳାନ୍ତି । ମୁଁ ଯାଦବକୁଳର ରକ୍ଷକ । ତୁ ଏତେ ନିକଟରେ ଥାଇ ସୁଦ୍ଧା ମୋତେ ଦେଖା କରିବାକୁ ଆସୁନାହୁଁ । ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟ, ବ୍ରହ୍ମା ସମସ୍ତେ ମୋର ଅଧୀନ । ତୁ ଗୋଟିଏ ଗଉଡ଼, ମୋତେ ଅବଜ୍ଞା କରି କର ଦେଉନାହୁଁ । ମୁଁ ତୋର ନଗର ଆକ୍ରମଣ କରି ଧ୍ୱଂସ କଲେ କିଏ ତୋତେ ରକ୍ଷା କରିବ ? ମୋର ଶ୍ୱଶୁର ବୀର ଜରାସନ୍ଧ, ସଖା ବୀର କେଶୀ, ବ୍ୟୋମା, ଅମ୍ବା, କଦମ୍ବା, ଚାଣୁର, ମୁଷ୍ଟିକ, ଶଲ୍ୟ ପ୍ରଭୃତି ମୋର ଅନୁଚର ଅଛନ୍ତି । ତୁ କି ଛାର, ମୁହୂର୍ତ୍ତକ ମଧ୍ୟରେ ମୁଁ ତୋତେ ଧ୍ୱଂସ କରିପାରେ, ମାତ୍ର ମୁଁ ତୋତେ କ୍ଷମା ଦେଉଅଛି । କୌଣସି ଭୟ ନ କରି ମୋର ଧନୁଉତ୍ସବ ଦେଖିବାକୁ ଆସିବୁ । ଉପହାର ସ୍ୱରୂପ ଏକଶତ ଭାର ଦହି, ଗୋଟିକା, ଅଧାମ ଇତ୍ୟାଦି ଆଣିବୁ । ତୋ ସଙ୍ଗରେ କେତେଜଣ ଗୋପାଳଙ୍କୁ ଆଣିଥିବୁ । ତୋର ପୁଅ ରାମକୃଷ୍ଣ ଦୁହିଁଙ୍କୁ ଅକ୍ରୂର ସହିତ ପଠାଇ ଦେବୁ । ତୋର ପୁଅ ଦୁଇଟି କେତେ ବଡ଼ ହେଲେଣି, ତାଙ୍କୁ ଦେଖିବ । ସେମାନେ ମଧ୍ୟ ଧନୁ ଉତ୍ସବ ଦେଖି ଆନନ୍ଦିତ ହେବେ । ତୁ ବୃଦ୍ଧ ହେଲୁଣି । ଆଉ କେତେ ଦିନ ଅବା ବଞ୍ଚିବୁ ? ତୋର ପୁଅ ଦୁହିଁଙ୍କୁ ଆମ୍ଭ ନିକଟରେ ପରିଚୟ କରାଇବୁ । ସେମାନଙ୍କ ହାତରେ ରାଜ୍ୟଭାର ଦେଇ ତୁ ସୁଖରେ ଘରେ ରହିବୁ । ସେମାନେ ମୋର

ତାଙ୍କ ଲୀଳା ବୁଝିବେ । ଆଜି ରାତି ପାହିଲେ କାଲି ଧନୁ ପୂଜା ହେବ । ଅତଏବ ତୋର ଶୀଘ୍ର ଆସିବା ଦରକାର ।"

ନନ୍ଦରାଜା ଏହି ଚିଠି ପଢ଼ି ଆନନ୍ଦିତ ହେଲେ । ମାତ୍ର ରାମକୃଷ୍ଣ ଦୁହେଁ ସହିତ ମଥୁରାକୁ ଯିବେ ଏ କଥା ଶୁଣି ସେ ମନରେ ବଡ଼ ଭୟ କଲେ । ନନ୍ଦରାଜା ଅନୁଚରମାନଙ୍କୁ ଡାକି ଗୋପରେ ଘୋଷଣା କରାଇଲେ ଯେ, ରାତି ପାହିଲେ ମଥୁରା ଯିବାକୁ ହେବ । ତେଣୁ ସମସ୍ତେ ନିଜ ନିଜର ଉପହାର ସଜାଡ଼ି ରଖନ୍ତୁ । ତତ୍ପରେ ରାଜା ନନ୍ଦ ଅକ୍ରୂରଙ୍କର ଉପଯୁକ୍ତ ଅତିଥି ସତ୍କାର କଲେ ।

---

## (୧୩) ବୁଢ଼ୀ ନାଉରୀ

### ( କବି—ଦୀନକୃଷ୍ଣ ଦାସ )

**କବି ପରିଚୟ**—ଭକ୍ତ କବି ଦୀନକୃଷ୍ଣ ଅଷ୍ଟାଦଶ ଶତାବ୍ଦୀରେ ଜୀବିତ ଥିବାର ଜଣାଯାଏ । ସେ ଓଡ଼ିଶାର ପ୍ରସିଦ୍ଧ ବୈଷ୍ଣବ କବିମାନଙ୍କ ମଧ୍ୟରୁ ଅନ୍ୟତମ । ତାଙ୍କର ମଧୁର ଲଳିତ ରଚନା ଓଡ଼ିଆ ସାହିତ୍ୟରେ ବିଶିଷ୍ଟ ସ୍ଥାନ ଅଧିକାର କରିଅଛି । ରସକଲ୍ଲୋଳ, ରସବିନୋଦ, ନାଦ-କେଳି, ଭୃଙ୍ଗକେଳି, ପ୍ରସ୍ତାବସିନ୍ଧୁ, ଜ୍ଞାନସାଗର, ଗୁଣସାଗର, ଅମୃତସାଗର, ମୁକ୍ତିସାଗର, ନାମରତ୍ନଗୀତା ତାଙ୍କ ଦ୍ୱାରା ରଚିତ । ରସକଲ୍ଲୋଳ ତାଙ୍କର ଲେଖା ମଧ୍ୟରେ ସର୍ବଶ୍ରେଷ୍ଠ । ଏଥିର ପ୍ରତ୍ୟେକ ପଦର ଆରମ୍ଭରେ 'କ' ଅଛି । ବୁଢ଼ୀ ନାଉରୀ କବିତାଟି କବିଙ୍କର 'ନାବକେଳି'ରୁ ଉଦ୍ଧୃତ ହୋଇଅଛି ।

**କଠିନ ଶବ୍ଦ**—ଅଖାଲ—ପାଲ, ପାତ—ପକାଇ, ମୀନ—ମାଛ, ଟମାଳି—ପରିହାସ, ରଙ୍ଗରସ, ଖାଙ୍କର—ଚିମୁଟି, ଢେଙ୍ଗ—ଝୋଲା, ପେଚଡ଼ା—କେଉଁଟ, ବନ୍ଧୁ—ମୁଣ୍ଡି, ଥୋଡ଼ି—ଦାଢ଼ି, ବହୁଲି—ବିନ୍ଧିତ,

ଉପନ୍ତ—ଅନାବର୍ତ୍ତ, ଗୋଈ—ଗୋପୀ, ଗଉଡ଼ୁଣୀ; ଗୋରସ—ଦୁଧ, କାଣ୍ଡୁଆ—ଇଚ୍ଛା, କେଉଟା—କେଉଟ, ଶ୍ରବଣ—କାନ ।

ସାଧୁଶବ୍ଦ—ଦଦରା—ଜର୍ଜ୍ଜର; ବଙ୍କା—ବକ୍ର, କୁହୁ—ଦନ୍ତ, ଅମ୍ବିଳ—ଅମ୍ଳ, ପହର—ପ୍ରହର, କେଉଟ—କୈବର୍ତ୍ତ, ଗୋଈ—ଗୋପୀ, ପାକଲ—ପକ୍ୱ, ଡାହାଣ—ଦକ୍ଷିଣ, କଉଡ଼ି—କପର୍ଦ୍ଦକ, ମଝି—ମଧ୍ୟ ।

**ସାରକଥା**—ଗୋପପୁରର ସ୍ତ୍ରୀମାନେ ଦିନେ ମଥୁରାକୁ ଦୁଧ ବିକିବାକୁ ଯାଉଥିଲେ । ସେମାନେ ଯମୁନା କୂଳରେ ପହଞ୍ଚି ଦେଖିଲେ ଯେ ନଈ ପାଣିରେ ପୂର୍ଣ୍ଣ ହୋଇଅଛି । କପରି ନଈ ପାର ହେବେ ଭାବୁଛନ୍ତି ଏହି ସମୟରେ ସେମାନେ ଗୋଟିଏ ଡଙ୍ଗା ଦେଖିବାକୁ ପାଇଲେ । ସେ ଡଙ୍ଗାଟି ନିତାନ୍ତ ଦଦରା । ଠାଏ ଠାଏ ପାଣି ପଶି ଯାଉଥିଲା । ନାଉରୀ କାନ୍ଧରେ ଖଣ୍ଡିଏ କଉଡ଼ି ପକାଇ ମଙ୍ଗ ଉପରେ ବସିଥିଲା । ଡଙ୍ଗା ଭିତରେ ଗୋଟିଏ ଜାଲ ପଡ଼ିଥିଲା ଓ ନାଉରୀ ପାଖରେ ଖାଲୋଇଏ ମାଛ ଥିଲା । ସେ ମଝିରେ ମଝିରେ ଏଣୁ ତେଣୁ ଗୀତ ପଦେ ପଦେ ବୋଲି ଦେଇ ଡଙ୍ଗା ବୁହାଉଥିଲା । ତାର ମୁଣ୍ଡର ବାଳ ଫୁରୁ ଫୁରୁ ହୋଇ ଉଡୁଥିଲା ଓ ତାର ଆଖିରୁ ଲେଟେରା ବୋହୁଥିଲା । ପାଚିଲା ଥୋଡଗୁଡ଼ାକ ଛାତି ଉପରେ ପଡ଼ିଥାଏ, ତାର ବର୍ଣ୍ଣ ନିପଟ କଳା, ପାକୁଆ ପାଟିରେ ଗୋଟିଏହେଲେ ଦାନ୍ତ ନ ଥିଲା । ଏପରି କି, ବୁଢ଼ା ହସିଲେ ମଧ୍ୟ କଦର୍ଯ୍ୟ ଦେଖାଯାଉଥିଲା । ଯାହାହେଉ ଗୋପୀମାନେ ନଈ ପାର କରି ଦେବାପାଇଁ ତାକୁ ଡାକି କହିଲେ, "ହେ ନାଉରି, ଆମକୁ ନଈ ପାରି କରି ଦେ । ଆମ୍ଭେ ତୋତେ ଉଚିତ ପାଉଣା ଦେବୁ । ଡେରି କଲେ ଆମ ଦୁଧତକ ଛିଡ଼ିଯିବ । ଆମେ ସକାଳୁ ଏ ନଈକୂଳରେ ରହିଁ ବସିଛୁ । ଚଞ୍ଚଳ ଆମକୁ ପାରି କରି ଦେ ।" ମାତ୍ର ସେମାନେ ଯେତେ ଡାକିଲେହେଁ ନାଉରୀ ଶୁଣିଲା ନାହିଁ । ସେ ଗୋପୀମାନଙ୍କ ଆଡକୁ କଣେଇ କଣେଇ ଚାହିଁ ନାଆଟାକୁ ଏଣେ ତେଣେ ନେଇ ମଝିରେ ବେଳ ବିତାଇଲା । ଗୋପୀମାନେ ନିତାନ୍ତ

ବିରକ୍ତ ହୋଇ ତାକୁ ଗାଳି ଦେଇ କହିଲେ, "ତୁ କାଳ ହୋଇଲୁଣି କି ? ଆମେ ତୋତେ ଡାକି ଡାକି ମଲୁଣି, ତୁ ଶୁଣିବାକୁ ନାହୁଁ । ତୋ କାନକୁ ସାପ ଖାଉ । ଦଇବ ଯେବେ ସତ୍ୟ ହୋଇଥିବ, ତୋତେ ନିଶ୍ଚେ ଭୂତ ମାଡ଼ି ଦସିବ । ତୋ ଡଙ୍ଗାର ମଙ୍ଗ ଛିଡ଼ିପଡ଼ିବ । ତୁ ମଝି ନଈରେ ବୁଡ଼ି ମରିବୁ । ତୋ ପାଲ ଦଉଡ଼ି ଛିଡ଼ିପଡ଼ିବ । ତୋ ଡଙ୍ଗା ବୁଡ଼ିଯିବ । ତୋତେ କୁମ୍ଭୀର ଖାଇବ ।"

---

## (୧୪) ସୀତା ଓ ହନୁମାନ ସମ୍ବାଦ

### (କବି—୮ ବିଶ୍ୱନାଥ ଖୁଣ୍ଟିଆ)

**କବି ପରିଚୟ**—କବି ବିଶ୍ୱନାଥ ଖୁଣ୍ଟିଆ ଅଷ୍ଟାଦଶ ଶତାବ୍ଦୀରେ ପୁରୀରେ ବାସ କରୁଥିବାର ଅନୁମାନ କରାଯାଇଅଛି । ଏହାଙ୍କ ରଚିତ ବିଚିତ୍ର ରାମାୟଣର ଛାନ୍ଦଗୁଡ଼ିକ ଉତ୍କଳରେ ବିଶେଷ ଭାବରେ ଆଦୃତ ।

**କଠିନ ଶବ୍ଦ**—ମରକତ—ନୀଳବର୍ଣ୍ଣର ମଣିବିଶେଷ; ହେମ—ସୁନା, (ରାମଚନ୍ଦ୍ରଙ୍କର ଶରୀରର ବର୍ଣ୍ଣ ମରକତ ପରି ଓ ଲକ୍ଷ୍ମଣଙ୍କର ସୁବର୍ଣ୍ଣ ପରି), କଳେବର-ଶରୀର, କୁଶଳ-ମଙ୍ଗଳ, କୁଶଳରେ-ଭଲଭାବରେ, ନିପୁଣ କରି; ପାଦକମଳ—ପାଦକମଳ ପରି ( କର୍ମଧା ), ବିଚ୍ଛେଦ (ବି-ଛିଦ୍ +ଅ)—ବିରହ [ବିଂ-ବିଚ୍ଛିନ୍ନ], ତନୁ-ଶରୀର, ଅଧୈର୍ଯ୍ୟ—ନାହିଁ ଧୈର୍ଯ୍ୟ ଯାହାର [ବହୁବ୍ରୀହି], ଧୀର-ଧୀର, ବାନରବଳ-ମର୍କଟ ସେନା, ବିଶ୍ରବାନନ୍ଦନ—ବିଶ୍ରବାଋଷିଙ୍କର ପୁତ୍ର-ରାବଣ, କଣ୍ଠ କରିବା—ସମୟ ଧାର୍ଯ୍ୟ କରିବା, ବେନି—ଦୁଇ, କରପଲ୍ଲବ-କରପଲ୍ଲବ ପରି [କର୍ମଧା], ଅନାମିକା—କନିଷ୍ଠାଙ୍ଗୁଳି, ନିରନ୍ତର—ସର୍ବଦା, ସମର୍ପଣ—[ସମ-ଋ+ଣିଚ+ଅନ] ପ୍ରଦାନ, ବିନୟବଚନ ବିନୟପୂର୍ଣ୍ଣ ସମ୍ବାଦ, ପ୍ରବୋଧ-(ପ୍ର-ବୁଧ୍+ଅ) ସାନ୍ତ୍ୱନା, ଆଶ୍ୱାସନା (ବିଂ-ପ୍ରବୁଦ୍ଧ), ଅପରାଧ-ଦୋଷ, ଦ୍ୱିଜ-କବି ବିଶ୍ୱନାଥ ଖୁଣ୍ଟିଆ ।

**ସାରକଥା**—ରାବଣ ସୀତାଙ୍କୁ ପଞ୍ଚବଟୀ ବନରୁ ଚୋରିକରି ନେଇ ଲଙ୍କାର ଅଶୋକ ବନରେ ବନ୍ଦିନୀ କରି ରଖିଥିଲେ । ରାମଙ୍କର ଅନୁଚରମାନେ ସୀତାଙ୍କୁ ଖୋଜିବାକୁ ଲାଗିଲେ । ପରିଶେଷରେ ହନୁମାନ ଅଶୋକ ବନରେ ସୀତାଙ୍କୁ ଦେଖିବାକୁ ପାଇଲେ । ହନୁମାନଙ୍କର ପରିଚୟ ପାଇ ସୀତା ତାଙ୍କ ଆଗରେ ନିଜର ଦୁଃଖ ପ୍ରକାଶ କଲେ । ଏହି କବିତାରେ ସୀତା ଓ ହନୁମାନଙ୍କର କଥୋପକଥନ ଦିଆଯାଇଅଛି ।

ସୀତା ହନୁମାନଙ୍କୁ କହିଲେ, "ହେ ହନୂମାନ୍ ! ମୋର ସ୍ୱାମୀ ରାମଚନ୍ଦ୍ର ଓ ଦେବର ଲକ୍ଷ୍ମଣ କୁଶଳରେ ଅଛନ୍ତି ତ ! ସେମାନଙ୍କର ଦେହ ଦୁର୍ବଳ ହୋଇଯାଇ ନାହିଁ ତ ? ଲକ୍ଷ୍ମଣ ରାମଚନ୍ଦ୍ରଙ୍କର ପାଦପଦ୍ମରେ ଖଟି ସେବା କରୁଛନ୍ତିଟିକି ? ମୋର ବିରହରେ ରାମଚନ୍ଦ୍ରଙ୍କର ଶରୀର ବୋଧହୁଏ ଦୁର୍ବଳ ହୋଇଯାଇଥିବ । ମୋ କଥା ଭାବି ଭାବି ସେ ଅଧୀର ହେଲେ ଲକ୍ଷ୍ମଣ ତାଙ୍କୁ ଆଶ୍ୱାସନା ଦେଉଛନ୍ତି ? ରାମଚନ୍ଦ୍ର ବାନର ଯୂଥ ଘେନି ସମୁଦ୍ର ପାର ହୋଇ ଲଙ୍କାକୁ ଆସି ମୋତେ ନିଶ୍ଚୟ ଉଦ୍ଧାର କରିବେ ତ ? ତୁମ୍ଭେ ମୋତେ କାନ୍ଧରେ ବସାଇ ଉଦ୍ଧାର କରି ନେବାକୁ କହୁଛ, ମାତ୍ର ସ୍ୱଇଚ୍ଛାରେ ପର ଶରୀରକୁ ମୁଁ ସ୍ପର୍ଶ କରିବି କିପରି ? ରାବଣ ମୋତେ ବଳପୂର୍ବକ ଧରି ଚୋରିକରି ଆଣିଛି । ତୁମ୍ଭେ ଯଦି ଚୋରିକରି ମୋତେ ଉଦ୍ଧାର କରିନିଅ ତେବେ ମୋର ସ୍ୱାମୀଙ୍କର ଗୌରବ କାହିଁ ରହିବ ? ରାବଣ ମୋତେ କଣ୍ଟକରି କହିଥିଲେ ଯେ, ଦୁଇମାସ ମଧ୍ୟରେ ରାମ ଲକ୍ଷ୍ମଣଙ୍କୁ ଦେଖାଇବାକୁ ହେବ । ସେଥିରୁ ଏକମାସ ଗତ ହେଲାଣି । ଆଉ ଏକ ମାସ ପରେ ମୃତ୍ୟୁ ନିଶ୍ଚିତ । ଅତଏବ ତୁମେ ଅତିଶୀଘ୍ର ରାମ ଲକ୍ଷ୍ମଣଙ୍କୁ ଏଠାକୁ ଅଣାଅ । ମୋର ପ୍ରିୟ ସ୍ୱାମୀ ନିଜ କନିଷ୍ଠାଙ୍ଗୁଳିର ମୁଦ୍ରିକାଟି ସଙ୍କେତରୂପେ ପଠାଇ ଅଛନ୍ତି । ଆହା, ତାଙ୍କର ଅଙ୍ଗୁଳିଟି ମୁଦ୍ରିକାବିହୀନ ହୋଇ କେତେ ଅସୁନ୍ଦର ଦିଶୁଥିବ ।"

ଏହିପରି କହି ସୀତାଦେବୀ ମୁଦ୍ରିକାଟି ମସ୍ତକରେ ଲଗାଇ ଆଦରରେ ପଣତ କାନିରେ ବାନ୍ଧିଲେ । ତତ୍ପରେ ନିଜ ମସ୍ତକର ମଣିଟିଏ ବାହାର କରି ହନୁମାନଙ୍କ ହସ୍ତରେ ଦେଇ କହିଲେ, "ମୋର ପ୍ରଭୁଙ୍କୁ କହିବ, ମୋଠାରେ

ସେପରି ଦୟା କରିବେ। ମୁଁ ଅତି ହତଭାଗିନୀ, ସେ ମୋ ପ୍ରତି ଦୟା କଲେ ତାଙ୍କର ଦୟାସାଗର ନାମ ସାର୍ଥକ ହେବ । ମୋର ସକଳ ଅପରାଧ ମାର୍ଜନା କରିବାକୁ ତାଙ୍କୁ ଅନୁରୋଧ କରିବ ।"

ହନୁମାନ ସୀତାଙ୍କର ସମ୍ବାଦ ଦେଇ ଅଳକାଳ ମଧ୍ୟରେ ରାମଚନ୍ଦ୍ର ଙ୍କୁ ଲଙ୍କାକୁ ଆଣାଇବେ ବୋଲି ଆଶ୍ୱାସନା ଦେଇ ସୀତା ଦେବୀଙ୍କ ନିକଟରୁ ବିଦାୟ ନେଲେ ।



## (୧୮) ଯଶୋଦା ବିଳାପ

### (କବି—୬ ଅଭିମନ୍ୟୁ ସାମନ୍ତ ସିଂହାର)

**କବି ପରିଚୟ**—କଟକ ଜିଲ୍ଲାର ବାଲିଆ ଗ୍ରାମରେ ୧୭୫୭ ଖ୍ରୀଷ୍ଟାବ୍ଦରେ ଅଭିମନ୍ୟୁ ଜନ୍ମ ଗ୍ରହଣ କରି ୧୮୦୭ ଖ୍ରୀଷ୍ଟାବ୍ଦରେ ପ୍ରାଣତ୍ୟାଗ କରିଥିଲେ । ସେ [illegible]ରେ ଖଣ୍ଡାୟତ ଥିଲେ । ସଦାନନ୍ଦ ବ୍ରହ୍ମା ଏହାଙ୍କର ଦୀକ୍ଷାଗୁରୁ ଓ କବିଗୁରୁ ଥିଲେ । ସେ ବୈଷ୍ଣବ ଧର୍ମର ଜଣେ ନିଷ୍ଠାପର ଭକ୍ତରେ ପାଳନ କରୁଥିଲେ । ତାଙ୍କର ପିତାଙ୍କର ନାମ ଇନ୍ଦ୍ରଜିତ ସାମନ୍ତ ସିଂହାର । ଅଭିମନ୍ୟୁ ଶ୍ରୀ ରାଧାକୃଷ୍ଣଙ୍କ ଲୀଳା ବର୍ଣ୍ଣନା କରି ବିଦଗ୍ଧଚିନ୍ତାମଣି କାବ୍ୟ ଲେଖିଥିଲେ । ଏହି କାବ୍ୟ ସମ୍ପୂର୍ଣ୍ଣ ନ ହେଉଣୁ ସେ ଇହଧାମ ତ୍ୟାଗ କରିଥିଲେ। ସେ ବିଦଗ୍ଧଚିନ୍ତାମଣି ଛଡ଼ା ପ୍ରେମ ଚିନ୍ତାମଣି, ସୁଲକ୍ଷଣା, ରସବତୀ, ପ୍ରେମକଳା, ପ୍ରେମତରଙ୍ଗିଣୀ ପ୍ରଭୃତି କେତେକ କାବ୍ୟ ରଚନା କରିଥିଲେ ।

'ଯଶୋଦା ବିଳାପ' କବିଙ୍କର ବିଦଗ୍ଧଚିନ୍ତାମଣିରୁ ଆନୀତ । ମାତୃସ୍ନେହର ଧାରା ଏହି କବିତାର ଛନ୍ଦେ ଛନ୍ଦେ ପ୍ରବାହିତ ।

**ଶବ୍ଦାର୍ଥ**—(୨୦ପୃଷ୍ଠା, ୧-୨ପଦ) କାନନ—ବନ,ବାତ୍ସଲ୍ୟ (ବତ୍ସଳ +ଯ) ସ୍ନେହ, ମମତା—ଆଦର, ମାତା—କୃଷ୍ଣଙ୍କର ମାତା ଯଶୋଦା,

କଳାମାଣିକ-ମାଣିକ୍ୟ ଅତି ସୁନ୍ଦର ଓ ମୂଲ୍ୟବାନ ହୋଇଥିବାରୁ ଆଦରର
ପଦାର୍ଥ । ତାଙ୍କର ମାଆ କୃଷ୍ଣଙ୍କୁ ମାଣିକ୍ୟ ପରି ମନେ କରୁଥିଲେ, ତାଙ୍କର
ବର୍ଣ୍ଣ କଳା ହୋଇଥିବାରୁ ମାଆ ତାଙ୍କୁ ଆଦରରେ କଳାମାଣିକ ବୋଲି
ଡାକୁଥିଲେ । ନିଧନ—ଧନହୀନ, ସମ୍ବଳ—ଏକମାତ୍ର ସମ୍ପତ୍ତି, ପସରା—
ଭଣ୍ଡ, ଅନ୍ଧର ଲଉଡ଼ି—ଲଉଡ଼ି ଯେପରି ଅନ୍ଧର ପ୍ରଧାନ ଆଶ୍ରୟ, ତୁ ମୋର
ସେହିପରି ଆଶ୍ରୟ, ରତ୍ନହାର—ରତ୍ନର ହାର, ଜୀବଜୀବନ—ପ୍ରାଣର ପ୍ରାଣ,
ନୟନ ପ୍ରତିମା—ଆଖିର ତୋଳା, ସୁଖସୀମା—ପରମସୁଖର ଆଧାର,
(୭୧ପୃଷ୍ଠା-୧୦ପଦ) ଜନକଜନନୀ—ବାପମାଆ, ହୃଦତାପହରିଚନ୍ଦନ—
ହରିଚନ୍ଦନ ସ୍ୱର୍ଗର ଚନ୍ଦନବୃକ୍ଷ, ଚନ୍ଦନ ଲେପନ କଲେ ଶରୀର ଶୀତଳ
ହୁଏ, ତାପ ଦୂର ହୁଏ, ହୃଦୟର ତାପ ଦୂର କରିବାପାଇଁ କୃଷ୍ଣ
ଯଶୋଦାଙ୍କ ପକ୍ଷରେ ହରିଚନ୍ଦନ ପରି ଥିଲେ, ଅର୍ଥାତ୍ କୃଷ୍ଣଙ୍କ ହେତୁରୁ
ତାଙ୍କର ସକଳ ମନୋବେଦନା ଦୂର ହେଉଥିଲା । ଗୋଠିଦା—ବାବଡ଼ି,
ଅଧାମ—ଦୁଧରୁ ଛଆରି ମିଷ୍ଟାନ୍ନ, ଲବଣୀ—( ନବନୀତ ଶବ୍ଦରୁ ) ଲହୁଣୀ,
ଦୁର୍ବଳ—ଦୁର୍ବଳତା, ଡାକିନୀ—ଡାଆଣୀ, ଡାହୁଣୀ—ଡାକିନୀ, ଯୋଗିନୀ,
ଶ୍ରମ—ବାଧା, ତରୁ—ଗଛ, ମୃଦୁ--(ମୃଦ୍ + ଉ) କୋମଳ, ବେଣୁ—ବଂଶୀ,
ସ୍ୱନ—ସ୍ୱର, ସୁଗୃହିଣୀ—ବିଶେଷ ଚତୁରତା, ତ୍ରିଭଙ୍ଗ—ତିଅ ହେବା-
ବେଳେ ଦେହ ତିନି ଜାଗାରେ ବଙ୍କା ହୋଇଥିବା; ଠାଣିରେ—ଢଙ୍ଗେ ।
କୌତୁକରେ, ଅଳି (ଅଳ୍ + ଇ) ଜିଦ୍, ଜଗର, ନଟବର—ପ୍ରଧାନ ନଟ
(ସୂତ୍ରଧାର), ପରିପାଟୀ—ମନୋହର, ରଙ୍ଗିମା—ରକ୍ତିମା, କିଜାତି—କିପରି;
ନୟନନନ୍ଦନ—ଚକ୍ଷୁଉତ୍ପୀଡ଼', ମାନେ—ଶୋଭାପାଏ; ଅଳକା—ଚୂର୍ଣ୍ଣକୁନ୍ତଳ,
ଲଲାଟ—କପୋଳ, ଭାଲଦେଶ, ଜାବକଛାପ—କୁଂକୁମ ଛାପ । ନିରବଧି
(ନାହିଁ ଅବଧି ଯାହାର, ଅବ୍ୟୟୀଭାବ) ସର୍ବଦା, ଲୋଭି—ଲୋଭୀ ।

ସାରକଥା—କୃଷ୍ଣ ଗୋରୁ ପଲ ଘେନି ବନକୁ ଯେବେ ଅସ୍ତବାରେ
ବିଳମ୍ବ ହେବାର ଦେଖି ତାଙ୍କର ମାତା ଯଶୋଦା, ବିଳାପ କରି
କହୁଅଛନ୍ତି ।

"ତୁ ମୋର ପ୍ରାଣର ସଙ୍ଗାଳ, ଦରିଦ୍ରର ନିଧି, ଅନ୍ଧର ଲଉଡ଼ି । ତୁ ମୋର ଜୀବର ଜୀବନ, ମୋ ଆଖିର ପିତୁଳା, ତୁ ମୋର ସକଳ ସୁଖର ଆଧାର । ତୁ ଗୋରୁ ଘେନି ବନକୁ ଯିବାରୁ ବାପମାଆଁଙ୍କ ମନରେ ଅବେଁ ସୁଖ ନାହିଁ । ଏ ବୃଦ୍ଧବୟସରେ ତୁ ଆମର ଏକମାତ୍ର ପୁଅ । ତୋତେ ଦେଖିଲେ ମୋର ସବୁ ଦୁଃଖ ଉଡ଼ିଯାଏ । ତୁ ଏତେ ଆଦରରେ ବଢ଼ିଛୁ ଯେ, ତୋତେ ଗୋଟିକା, ଅଧାମ, ସର ରୁଚେ ନାହିଁ । ତୁ ଲହୁଣୀ ପାଇଁ ଅଳି କରୁଥାଉ । ତୋ ଅଝଟ ପଣ ଦେଖି ମୋତେ ବୁଦ୍ଧି ଦିଶେ ନାହିଁ । ତୋତେ ଦେଖିଲେ ଡାଆଣୀ ଲୋଭ କରିବେ ବୋଲି ମୁଁ ତୋତେ ବଣକୁ ଯିବାକୁ ବାରମ୍ବାର ମନା କରୁଥାଏଁ । ବଣରେ ରାକ୍ଷସମାନଙ୍କର ଗର୍ଜନ ଶୁଣାଯାଉଛି । ମୁଁ ଡାକୁଣୀ କାହିଁକି ତୋତେ ବଣକୁ ଛାଡ଼ିଦେଲି । ଝାଞ୍ଜି ଖରା ବାଜିବାରୁ ତୋ ଦେହରୁ ଝାଳ ବହିଯାଉଥିବ । ହୁଏତ କେଉଁ ଗଛତଳେ ବିଶ୍ରାମ ନେଉଥିବୁ । ତୋର ପାଦ ଅତି କୋମଳ । ବଣରେ କଣ୍ଟାଥିବ । ତୋର କଠାଉ କାହିଁକି ନେଲୁ ନାହିଁ । ଖାଇବାକୁ ଛତା ନେଲୁ ନାହିଁ କାହିଁକି ? ତୋର ବଂଶୀସ୍ୱନକୁ ମୁଁ କାନ ଡେରି ବସିଥାଏଁ । ସେ ସ୍ୱର ନ ଶୁଣି ମୋ ମନ ଅଥୟ ହେଉଅଛି । ତୋର ବଳଭଦ୍ର ସମ ତୋଠାରୁ ଅଳ୍ପ ଅଝଟ । ତାକୁ ବୁଝାଇ ଘରେ ରଖାଇ ଗଲୁ ନାହିଁ କାହିଁକି ? ତୋତେ ନ ଦେଖି ମୁଁ ଅନ୍ଧୁଣୀ ପରି ହେଉଛି । ତୁ ତ୍ରିଭଙ୍ଗୀରେ ଠିଆହୋଇ ଗାଲକୁ ଫୁଲାଇ ମୁରଲୀ ବଜାଇବା କଥା ମନେ ପଡ଼ି ଯାଉଅଛି । ତୁ ଫୁଲମାଳରେ ବେଶ ହୋଇଥାଉ, କୋଳ ପାଇଁ ଅଳି କରି ଧୂଳିରେ ଗଡ଼ୁ । ତୋର ନଟବର ବେଶ, ତୋର ରକ୍ତିମ ଅଧରରେ ହସ, କସ୍ତୁରୀ ଚିତା, ଅଳକାରେ ଆବୃତ ଲଲାଟ କେଡ଼େ ସୁନ୍ଦର ! ତୋର ନାକରେ ମୋତି ଓ ବସଣୀ କି ମନୋହର ଦେଖାଯାଏ । ଏ ସବୁ ଦେଖିବା ପାଇଁ ମୋ ମନ ଅତିଶୟ ଅଧୀର ହେଉଛି ।"

---

## (୨୦) ଜଗତେ କେବଳ

### (କବି ୰ କବିସୂର୍ଯ୍ୟ ବଳଦେବ ରଥ )

**କବି ପରିଚୟ**—କବିସୂର୍ଯ୍ୟ ବଳଦେବ ଓଡ଼ିଶାରେ ଇଂରେଜ ଶାସନର ପ୍ରାରମ୍ଭରେ ଜନ୍ମଗ୍ରହଣ କରିଥିଲେ । ଏହାଙ୍କର ପୂର୍ବ ପୁରୁଷ ଗଞ୍ଜାମ ଜିଲ୍ଲାରୁ ଆସି ଆଠଗଡ଼ରେ ବସବାସ କରିଥିଲେ । କବିସୂର୍ଯ୍ୟ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟଦ୍ୱାରା ପ୍ରଭାବିତ ହୋଇଥିଲେହେଁ ତାଙ୍କ ନିଜର ପୂର୍ଣ୍ଣ ସ୍ୱାତନ୍ତ୍ର୍ୟ ଅଛି । କବିଙ୍କର 'କିଶୋରଚନ୍ଦ୍ରାନନ ଚମ୍ପୂ'ରେ ସଂସ୍କୃତ ଶ୍ଳୋକ, ଗଦ୍ୟ ଓ ଓଡ଼ିଶୀ ଗୀତ ଅଛି । ଏ ପ୍ରକାର ଲେଖା ଓଡ଼ିଆରେ ବିରଳ । ତାଙ୍କର 'ଚନ୍ଦ୍ରକଳା' କାବ୍ୟ ଅସମ୍ପୂର୍ଣ୍ଣ ଅବସ୍ଥାରେ ଅଛି । ଏହା ଛଡ଼ା ସେ ଅନେକ ସଙ୍ଗୀତ ଓ କବିତା ଲେଖିଯାଇ ଅଛନ୍ତି । ସେ ଆଠଗଡ଼, ଜଳନ୍ତର ଓ ପୁରୀର ରାଜାମାନଙ୍କଠାରୁ ଯଥେଷ୍ଟ ଆଦର ଅଭ୍ୟର୍ଥନା ପାଇଥିଲେ । ଆଠଗଡ଼ର ରାଜା ତାଙ୍କୁ 'କବିସୂର୍ଯ୍ୟ' ଉପାଧିରେ ଭୂଷିତ କରିଥିଲେ । ଏହି ଉପାଧି ପରେ ପୁରୀର ମହାରାଜାଙ୍କ ଦ୍ୱାରା ସମର୍ଥିତ ହୋଇଥିଲା । ଅଳ୍ପଦିନ ମଧ୍ୟ ସେ କେତେକ ରାଜ୍ୟର ମେନେଜର କାର୍ଯ୍ୟ ସୁରୂପେ ସମ୍ପାଦନ କରିଥିଲେ । ପ୍ରାୟ ୫୬ ବର୍ଷ ଖ୍ରୀଷ୍ଟାବ୍ଦରେ ବସନ୍ତ ରୋଗରେ ତାଙ୍କର ମୃତ୍ୟୁ ହୋଇଥିଲା ।

"ଜଗତେ କେବଳ" ଏହି କବିତାରେ କବିସୂର୍ଯ୍ୟ ଅଧମ ଲୋକଙ୍କର ନୀଚବୃତ୍ତି ଅନେକ ପ୍ରକାରେ ତୁଳନା କରିଅଛନ୍ତି ।

**କଠିନ ଶବ୍ଦ**—ଜଟିଳ (ଜଟା+ଇଲ) ଜଟାଯୁକ୍ତ, ରୋମାଳିକା—ରୋମ ସମୂହ, ଶିଖରୀ (ଶିଖର+ଅଛି ଅର୍ଥରେ ଇନ) ପର୍ବତ, ଦରି—ଗହ୍ୱର, କନ୍ଦର, ଭ୍ରୂକୁଟି—ବକ୍ରଦୃଷ୍ଟି, ସରମା—କୁକୁର, କଣ୍ଠୀରବ—ସିଂହ, ଅଳକ୍ତ—ଅଳତା, ଦ୍ରବ—ରସ, ରସାଳ—ଆମ୍ବ, କବଳ—ଭୋଜନ, ଚଞ୍ଚରୀକ—ଭଅଁର, ପଞ୍ଚମ ଆଳାପ—ପଞ୍ଚମ ସ୍ୱରରେ ଗାନ (କୋକିଳର ସ୍ୱରକୁ ପଞ୍ଚମ କୁହାଯାଏ), ବରଜୀବ—ଗାଈ, ବରଜୀବରସ—ଗାଈଦୁଧ,

ବରଜ—ଚାଷୀଗଣର, ଈମେଘ—ବର୍ଷା, ଗ୍ରାସ ( ଗ୍ରସ୍ + ଅ ) ଖାଇବା, ମନ୍ଦାକିନୀ (ମନ୍ଦ — ଅକ୍ + ଇନ + ଈ) ଗଙ୍ଗା, ରଜ — ଧୂଳି, ଘ୍ରାମନ୍ଦୁକର — ଧୂତୁର, ତଣ୍ଡ—ଥଣ୍ଟ, ଚରଣ—ଗୋଡ଼, ମୃଣାଳ—ପଦ୍ମନାଡ଼, ବକ— ବଗୁଲି, ମରାଳୀ—ହଂସୀ. ଶ୍ରେୟଦାର—ଅନ୍ତଗାମୀ ସୁପାଣ୍ଡ, ସଦ୍ୟର — ଅଶ୍ୱାରୋହୀ, ଖିଲ୍ଖିଲେଲ — ଖୁଆଇଲେ, ତୁରଗ (ତୁର—ଗମ୍ + ଅ) ଅଶ୍ୱ, ତୁରଗ ଓ ତୁରଙ୍ଗମ ମଧ୍ୟ ହୁଏ, ଗାସଭ — ଗଧ, ବଦରିକା ବନ — ବରକୋଳି ବଣ, ବଦରିକା ନାମକ ତୀର୍ଥକ୍ଷେତ୍ର, ଖଦ୍ୟୋତ — କୁଞ୍ଜୁଳିଆ ପୋକ, ପ୍ରଭାକର (ପ୍ରଭା — କୃ + ଅ) ସୂର୍ଯ୍ୟ, ପ୍ରୀତ — ସୁନା, ଜନତା — ଜାତି, ଉଦ୍ଭସଲତା — ଦୁବଘାସ, ଢୁଳେଲ — ସଙ୍ଗରେ, ସମଜଇ ନାହିଁ — ବୁଝିପାରେ ନାହିଁ, ସ୍ୱଜାତି ଭାଷା — ନିଜର ମାତୃଭାଷା, ନବେଦ ନ ଜର୍ଣ୍ଣ — ନରବ ନ ରହ, ତତ୍ତ୍ୱଦର୍ଶୀ — ସାଂଖ୍ୟ ନ୍ୟାୟ ପ୍ରଭୃତି ଷଡ଼ ଦର୍ଶନରେ ପଣ୍ଡିତ, ଅଭିମାନ — ଅହଂକାର, କାଳି — ସ୍ନେହ କରୁଥି, କରମର୍ଦ୍ଦି — କରଞ୍ଜ ଫଳ, ଶିଖା — ମସ୍ତକ, ହର ମଉଳ ଯୋଗ୍ୟ — ଶିବଙ୍କ ମସ୍ତକରେ ସ୍ଥାନ ପାଇବାର ଯୋଗ୍ୟ, ଚାହୁ — ଇଚ୍ଛାକରୁ, ଚାରୁ — ସୁନ୍ଦର, ଚନ୍ଦ୍ରବଦନା — ଚନ୍ଦ୍ରବଦନୀ ବନିତା, ବହ୍ନି (ବହ୍ + ନି) ଅଗ୍ନି, ବିଶାଖରେ, ଚୈତ୍ରରେ, ଧାତା — (ଧା + ତୃ) ବିଧାତା, ନିକାଶ — ବାହାର, ପ୍ରକାଶ (ପ୍ର — କାଶ୍ + ଅ) ।

**ସାରକଥା** — କୁକୁର ହୁଏ ବେଙ୍କର ରେଳଙ୍କଢ଼ିକୁ ଜହ୍ନାଘାତ କରି ପର୍ବତ ଶିଖରରେ ଯେତେ ଗର୍ଜନ କରୁ, ଯେତେ କୁଟିଳ ବୁଦ୍ଧି ନକ୍ଷେପ କରୁ ପଛକେ ଓସ କେବେହେଁ ସିଂହ ହୋଇ ପାରିବ ନାହିଁ ।

କାଳି ବସନ୍ତରେ ଅଳତା ବୋଲି ହୋଇ ଆମ୍ବ ଗଛର ଶାଖାରେ ବସି ବରଂ, ଆମ୍ବ ବଉଳ ଖାଇଲେ କଅଣ କୋଇଲି ପରି ପଞ୍ଚମ ସ୍ୱରରେ ଗାନ କରିବ ?

ଘୋର ଅମେଘ ଅନ୍ଧାର ଭାଗ୍ୟକର; ଦେହରେ ଗନ୍ଧ ପୁଷ୍ପ ବୋଳିହୋଇ, ବୋଧୂଗୃହରେ ଜୀବନ ଧାରଣ କଲେହେଁ କେବେହେଲେ ରାଇ ହୋଇ ପାରିବ ନାହିଁ ।

ବଙ୍କ ପାଦ ଓ ଚଞ୍ଚୁରେ ହିଙ୍ଗୁଳ ଲଗାଇ, ମୁଖରେ ଶଣ୍ଢ ମୃଣାଳ ଧରି ବକ୍ର ଗତି କଲେ କି ମରାଳୀରେ ପରିଣତ ହେବ ? ଗଧଟିଏକୁ ନାନା ପ୍ରକାର ଭଲ ଖାଦ୍ୟ ଖୁଆଇ ତା ଉପରେ ଗୃଙ୍ଗୁକ ଧରି ସବାର ହେଲେ ଓ ତା ଆଗରେ ସ୍ୱପାହ୍ୱ ଗୃଲିଲେ ସେ କଦାପି ଘୋଡ଼ା ହୋଇପାରିବ ନାହିଁ ।

କୁକୁଜୁଳିଆ ପୋକ ଦଦରିକା ବନରେ ରହି ନାନା ବ୍ରତ ଉପବାସ ପାଳିଲେ ମଧ୍ୟ ସୂର୍ଯ୍ୟ ହୋଇ ନ ପାରେ ।

ପିତ୍ତଳକୁ ଗୋଟିଏ ଥର ପୁଟ ଦେଲେହେଁ ସୁନା ହୋଇଯିବ ନାହିଁ ।

ଦୁବଘାସ ନନ୍ଦନ ବନରେ ଜନ୍ମି ତୁଳସୀ ସହିତ ଯେତେ ଘଷି ହେଲେହେଁ ତାହା ତୁଳସୀ ବୋଲି ଗଣ୍ୟ ହେବ ନାହିଁ ।

ଏପରି ସ୍ଥଳମାନଙ୍କରେ ଲୋକେ କେବଳ ଉପହାସ କରିଥାଆନ୍ତି । ଯେଉଁ ଲୋକ ନିଜର ମାତୃଭାଷା ବୁଝିବାକୁ ଅକ୍ଷମ, ସେ ଉପହାସର ପାତ୍ର ହୋଇଥାଏ । ମୂର୍ଖଲୋକ ପକ୍ଷରେ ଷଡ଼ଦର୍ଶନରେ ପଣ୍ଡିତ ଲୋକ ସହିତ ବାଦ କରିବା ବୃଥା । ଯେଉଁ ଲୋକ ପରର ନିଃଶ୍ୱାସକୁ ସୁଦ୍ଧା ସମ୍ଭାଳିବାକୁ ଅସମର୍ଥ, ସେ ଯଦି କାଡି ଧରି ହାତୀ ସଙ୍ଗେ ଲଢ଼େଇ କରିବାକୁ ବାହାରେ, ତାକୁ ଲୋକେ ହସରେ ଉଡ଼ାଇ ଦେବା ସ୍ୱାଭାବିକ ।

ଚମ୍ପାଫୁଲ ସିନା ଦିବଙ୍କ ମୁଣ୍ଡରେ ସ୍ଥାନ ପାଏ । ଯାହାର ମଥାରେ କଙ୍ଗେଇ ଫୁଲ ରହିବାର କଥା ସେ ଚମ୍ପାଫୁଲକୁ ଆଶା କରିବା ବୃଥା ।

ଗୃହଅନ୍ଧାରେ ଯେତେ ନିଆଁ ଜାଳିଲେ ସୁଦ୍ଧା ସୁନ୍ଦର ଚନ୍ଦ୍ରୋଦୟର ଆଲୋକ ବାହାରିବ ନାହିଁ ।

---

# (୨୧) ଦରବାର

## ( କବି—୰ ରାଧାନାଥ ରାୟ )

**କବି ପରିଚୟ—**କବିବର ରାଧାନାଥ ରାୟ ବାହାଦୁର ଓଡ଼ିଶା ଓ ବର୍ଦ୍ଧମାନରେ ଶିକ୍ଷା ବିଭାଗର ଇନ୍‌ସପେକ୍ଟର ହୋଇଥିଲେ । ସେ ଭଲରୂପେ ଇଂରେଜୀ ଶିକ୍ଷାଲାଭ କରିଥିଲେ । ସେ କେତେକ ଓଡ଼ିଆ ପାଠ୍ୟପୁସ୍ତକ ରଚନା କରିଥିଲେ । ଯୌବନରେ ମଧୁସୂଦନ ଦତ୍ତଙ୍କର ବୀରାଙ୍ଗନା କାବ୍ୟ ଅନୁକରଣରେ ବଙ୍ଗଳାରେ 'ଲେଖାବଳୀ' ଲେଖିଥିଲେ । ବଙ୍ଗଦେଶରେ ଏହା ଆଦୃତ ହୋଇଥିଲା । ଭୁଦେବ ମୁଖୋପାଧ୍ୟାୟଙ୍କର ପ୍ରରୋଚନାରେ ସେ ବଙ୍ଗଳା ଛାଡି ଓଡ଼ିଆ ଲେଖାରେ ମନ ଦେଲେ । ସେ ଓଡ଼ିଆ ସାହିତ୍ୟରେ ନୂତନ ଧାରା ପ୍ରବର୍ତ୍ତନ କରିଅଛନ୍ତି । ତାଙ୍କର ପ୍ରାକୃତିକ ବର୍ଣ୍ଣନା ଜୀବନ୍ତ । ଚିଲିକା, ମହାଯାତ୍ରା, ମେଘଦୂତ, ପାର୍ବତୀ, ଯଯାତିକେଶରୀ ପ୍ରଭୃତି ତାଙ୍କର ଲେଖା । ଓଡ଼ିଆରେ ଅମିତ୍ରାକ୍ଷର ଛନ୍ଦର ପ୍ରବର୍ତ୍ତକରୂପେ ସେ ଖ୍ୟାତି ଅର୍ଜିଅଛନ୍ତି । ସେ ୧୮୪୮ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱର ଜିଲ୍ଲାର କେଦାରନାଥ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ୧୯୦୮ ମସିହାର ଅପ୍ରେଲ ମାସରେ ତାଙ୍କର ମୃତ୍ୟୁ ହୋଇଥିଲା ।

ସେ 'ଦରବାର'ରେ କବି ଉପାଧିର ଅସାରତା ଦର୍ଶାଇ ଅଛନ୍ତି । ରାଜଦତ୍ତ ଉପାଧି ପ୍ରଦାନ କରିବାକୁ ଆଡ଼ମ୍ବରପୂର୍ଣ୍ଣ ଦରବାର ହୋଇଥାଏ । ଏହି ଉପାଧି ପାଇବାକୁ ଲୋକେ ନାନା ଗର୍ହିତ ପନ୍ଥା ଅନୁସରଣ କରିଥାନ୍ତି । ମାତ୍ର ମୃତ୍ୟୁପରେ ସେମାନେ ପରଲୋକରେ କି ଆସନର ଉପଯୁକ୍ତ ହେବେ ଚିନ୍ତା କରନ୍ତି ନାହିଁ । ଲୋକେ କିପରି ନୀତିମାର୍ଗରେ ଚଳି ସତ୍କାର୍ଯ୍ୟ କରିବେ ଓ ପରଲୋକରେ ଉଚ୍ଚ ଆସନର ଅଧିକାରୀ ହେବେ ସେଥିପ୍ରତି କବି ଲୋକଙ୍କର ଦୃଷ୍ଟି ଆକର୍ଷଣ କରିଅଛନ୍ତି ।

**କଠିନ ଶବ୍ଦ—**ପୂର୍ବ କୀର୍ତ୍ତି (କର୍ମଧା), ପୂର୍ବ କୀର୍ତ୍ତିର ସ୍ମୃତି (ଷଷ୍ଠୀତତ୍), ପୂର୍ବ କୀର୍ତ୍ତିସ୍ମୃତି ଦ୍ୱାରା ପୂତ ( ତୃତୀୟାତତ୍ ) ପ୍ରାଚୀନ କୀର୍ତ୍ତିର

ସ୍ଥୁ, ଚେଶ୍ୱର ପର୍ବତ, ଅଟ୍ଟହାସକ (ଅଟ୍ଟହାସ+ସମ୍ବନ୍ଧାର୍ଥରେ କ), ସ୍ଥୁ, ତ ଳୁପକ ଯୋଗ [ରୂପକର୍ମଧା] ପ୍ରତିଲୋମ-ଲୋମର ବିପରୀତ [ପର୍ଯ୍ୟାୟୀ ଭେଦ], ବିପର ଭାର୍ଥ ବୋଧକ ଶବ୍ଦ — ଅନୁଲୋମ, ନଶ୍ୱର [ନଶ+ବର] ଧ୍ୱଂସଶୀଳ, ଗାହିମା [ଗୁରୁ+ଇମନ୍] ବଡ଼ପଣ, ମତ୍ତ [ମଦ୍+ତ] ପାଗଳ, ବ୍ୟାପାର [ବି-ଆ-ପୃ-ଋ+ଅ] ବସ୍ତୁ, ଘଟା — ଆଡ଼ମ୍ବର, ରାଜସ [ରଜସ୍+ଅ] ରଜୋଗୁଣ, ଅଭିଯାନ-[ଅଭି-ଯା+ଅନ୍] ଆକ୍ରମଣ, ପ୍ରାଚୀର — ପାଚେରି, ପ୍ରକଟର — ପ୍ରଚ୍ଛନ୍ନ, ଜରାଜୀର୍ଣ୍ଣ [ଜରାଦ୍ୱାରା ଜୀର୍ଣ୍ଣ] [ତୃତୀୟା ତତ୍] [ନବ୍ୟ-ନବ+ସ୍ୱାର୍ଥରେ ଯ] ନୂତନ, ଅଭିନବ, ବ୍ୟୋମ-[ବ୍ୟେ+ମନ୍] ଆକାଶ, ସଖେଦ [ଖେଦସହ ବର୍ତ୍ତମାନ], ଦନ୍ତୁରିତ ଦୁଃଖରେ, ଦୁର୍ଜ୍ଜୟ [ଦୁର-ଜି+ଅ] ଯାହା କଷ୍ଟରେ ଜୟ କରାଯାଏ; ବିପର୍ଯ୍ୟୟ-[ବି-ପରି-ଇ-ଅ] ପରିବର୍ତ୍ତନ, ପୁଣ୍ୟଶ୍ଳୋକ-ପବିତ୍ରଯଶା, ଶାଶ୍ୱତ—[ ଶଶ୍ୱତ+ଅ ] ଚିରସ୍ଥାୟୀ, ଅଚଳ— [ନ ଚଳ, ନଞ୍ତତ୍] ପର୍ବତ, ମତ୍ତ ରମା-ମତ୍ତୀର ଲକ୍ଷ୍ମୀରୂପିଣୀ, କାଞ୍ଚୀଜେମା — କାଞ୍ଚୀ ରାଜକନ୍ୟା ପଦ୍ମାବତୀ, ଖାହିର ଜେମା, କାଞ୍ଚୀ ଲେମାଙ୍କର ବେଣୀ ତାର ଅବ୍ୟର୍ଥ ପ୍ରଭା ଯାହାର, 'କାଞ୍ଚୀଜେମାବେଣୀ ପ୍ରଭ ଅଟେ ବେଣୀ' ଇତ୍ୟାଦି ଯୁକ୍ତି — କାଞ୍ଚୀ ରାଜକନ୍ୟା ପଦ୍ମାବତୀଙ୍କର ସୁବର୍ଣ୍ଣ ବେଣୀ ନ୍ୟାୟ, କୃଷ୍ଣାଦ୍ରବିଣୀ — ରାତ୍ରର-ଶର୍ଯ୍ୟ ମନ୍ଦ୍ରୀ — କୃଷ୍ଣାଦ-ଚନ୍ଦ୍ର [ମହାନଦୀ ଅନେକ ସ୍ଥଳରେ ପ୍ରସ୍ତର ମଧ୍ୟରେ ପ୍ରବାହିତା ] ।

ଜର୍ଜ୍ଜର — ଜୀର୍ଣ୍ଣ, ମୁଖରା [ମୁଖ+ର ସ୍ତ୍ରୀଲିଙ୍ଗରେ ଆ] — ଶବ୍ଦାୟମାନ, ହେମନ୍ତିନୀ [ ସ୍ୱକନ୍ତା+ଇନ୍ ] [ ସ୍ତ୍ରୀ ] ଇ ନଦୀ, ଜଳମ୍ବରା [ଜଳ ରୂପ ଅମ୍ବର ଯାହାର ସ୍ତ୍ରୀଲିଙ୍ଗରେ ଆ], ଦ୍ରବାମ୍ବୁଧାରୀ [ପ୍ରବାହରେ ବାହାର କରେ ଯେ ) ନଦୀ ସ୍ରୋତର ବର୍ଣ୍ଣନା କରୁଛି ବା, ଦନ୍ତୀ [ଦନ୍ତ+ଅସ୍ତି ଅର୍ଥରେ ଇନ୍] ହସ୍ତୀ, ଚନ୍ଦ୍ରାଲୋକ-ଚନ୍ଦ୍ରଙ୍କ ଆଲୋକ, [ବେଳ-ବୋଲ ନାଦର ତରଙ୍ଗାଘାତ ଚାଲେ] ତରଙ୍ଗ ଭ୍ରୂଭଙ୍ଗ [ତରଙ୍ଗ ରୂପକ ଭ୍ରୂଭଙ୍ଗୀ] ଲହରୀ ରୂପକ ଚକ୍ଷୁଭଙ୍ଗି, ମାସ ଯାତ୍ରା [ପତାକା, ହାସ ଦ୍ରବିତ ଦିଗ ଅଞ୍ଚଳର ଅଛି], ହାସ [ହସ୍+ଅ] ହସ, [ବିଶେଷଣ] । ହସ୍ତ — ଅନୁନୟ — କଦାପି ନୁହେଁ, ଶୁଣ୍ଡାଳ — [ଶୁଣ୍ଡ+ଅସ୍ତି ଅର୍ଥରେ ଅଳ] ହାତୀ,

(କୃ-ଅସ୍+ତ) କହ୍ଲତ—ଦାଢ଼, କୋଟୀ—ଶେଷସୀମା, ପ୍ରତିବାସୀ (ପ୍ରତି-ବସ୍+ଇନ୍) ପଡ଼ୋଶି, ପାଖରେ ଥିବା, ଉକୋ୍ଟପୀଡ଼ିବ୍ୟାଧି—ଉକୋ-ଟ୍ଟଣର ପକ ରୋଗ ।

ପେଖନା—ଛଳନା, ଗାଁକ—ସ୍ପର୍ଦ୍ଧା, ଗର୍ବ, ବର୍ହ—ମୟୂର ପୁଚ୍ଛ; କେକୀ—ମୟୂର ,ମିଶି—ହରିତକୀ ଓ ତୁତିଆ ନିର୍ମିତ ଦନ୍ତ ମଞ୍ଜନ, ବଧିଗା—ସ୍ତ୍ରୀ ।

(ହରିତକୀ ତୁତିଆ ନିର୍ମିତ ଦନ୍ତ ମଞ୍ଜନ ବ୍ୟବହାର କଲେ ଦାନ୍ତର ରଙ୍ଗ ସୁନ୍ଦର ହୁଏ । ଯେଉଁ ସ୍ତ୍ରୀର ଏପରି ଦାନ୍ତ ଥାଏ ସେ ତାକୁ ଦେଖା-ଇବା ପାଇଁ ବର୍ଣ୍ଣମାନଙ୍କର ଦନ୍ତ୍ୟ ଉଚ୍ଚାରଣ କରିବାକୁ ଚେଷ୍ଟା କରେ) ତକମା—ପଦକ, ଫୁଲ୍ଲପଣ—ଦର୍ପଣ, ଦାହାଦୃଷ୍ଟି, ଜିଗୀଷା—(ଜି-ସନ +ଅ, ସ୍ତ୍ରୀ ଆ) ଜୟ କରିବାର ଇଚ୍ଛା, ଅକିଞ୍ଚନ—ନିଃସ୍ୱ, ଉଦ୍ଘଟ୍ଟି—ସଂସାର ଚଟିଘର ପରି, ଚଟି ଘରେ ଭିନ୍ନ ସ୍ଥାନରୁ ଆସିଥିବା ଲୋକେ ଅଳ୍ପ କାଳ ରହି ଚାଲିଯାଆନ୍ତି । ସେହିପରି ମନୁଷ୍ୟ ଅଳ୍ପ କାଳ ପାଇଁ ଏ ସଂସାରକୁ ଆସି ଥାଆନ୍ତି ), ପ୍ରୟାଣ (ପ୍ର—ଯା+ଅନ) ପ୍ରସ୍ଥାନ, ମୃତ୍ୟୁ ଭେକ—ବେଶ, ବୃତ୍ତି, ବିଧାଣ—(ଅପଭ୍ରଷ୍ଟ) ବିଧାନ; ସାଙ୍ଗ—ଶେଷ, ଅଚିରେ—ଶୀଘ୍ର, ବୁଦ୍‌ବୁଦ—ପାଣି ଫୋଟକା, ଦର୍ଣ୍ଣାୟମାନ (ଦଣ୍ଡ ଶବ୍ଦରୁ ଆୟ, ଦଣ୍ଡାୟ ନାମ ଧାତୁରୁ ଶାନଚ୍) ଠିଆ, ଅଭିମାନ—(ଅଭି-ମା+ଅନ) ଗର୍ବ, ଦର୍ପ, ଶଫ୍ରୀ—କ୍ଷୁଦ୍ର ମାଛିଆଳି, ସଫରୀ—କ୍ଷୁଦ୍ର ମାଛ ବିଶେଷ, ବିତସ୍ତି—ବିଘତ (ଅନୁଷ୍ଠ ପରିମାଣ, ସତ୍ତ ବିତସ୍ତି ବା ସାଢ଼େ ଡିଘଣ୍ଡ), ବିଭୀ—ତେଜ, ଭଙ୍ଗୁର (ଭଞ୍ଜ୍+ଉର) ନାଶଶୀଳ, ଭୋଗଭୂ (ଭୋଗ-ଭୂ+କ୍ୱିପ) ଭୋଗର ଭୂମି ବା ଆଧାର, ବ୍ୟାଜ—ଛଳ, ଦର୍ପ—(ଦୃପ +ଅ) ଅହଂକାର, ଅଭ୍ରାନ୍ତ—(ନ-ଭ୍ରମ୍+ତ) ନିର୍ଭୁଲ, ଦେହଳୀ—ଦ୍ୱାରବନ୍ଧ, (ଦ୍ୱାରବନ୍ଧ ଅତିକ୍ରମ କରି ଯିବା ଆସିବା କରିଯାଏ), ଅରଦାଳି-ଚପରାସି, Orderly, ସୁଆଗ—ପାଚକ, ମେବା—ଫଳ, ଗତ ମୁଣ୍ଡ ଖାଇ —ନୈତିକତା ପ୍ରତି ଅଦୌ ଦୃଷ୍ଟି ନ ଦେଇ, ବାଲ୍ମ—ବେଶ୍ୟା, ସୁଜ୍ଞ—(ସୁ-ଜ୍ଞ+ଅ) ପଣ୍ଡିତ ବହ୍ନ୍ୟାଶ୍ରୟ (ବହ୍ନି ଶାର୍ଷ ଯାହାର, ବହ୍ନିଦାହୀ) ବହ୍ନି-

ମସ୍ତକ ବଶିଷ୍ଟ Hydraheaded, (ଜନନ୍ଥାର କୌଣସି ବଷୟରେ ସ୍ଥିରତା ନ ଥାଏ, ତେଣୁ ଏହା ଏକ ଶରୀର କନ୍ତୁ ବହୁମସ୍ତକବଶିଷ୍ଟ ପଶୁ ସଙ୍ଗେ ତୁଳନୀୟ), ଫେନଚୂଡ଼ (ଫେନ ଚୂଡ଼ାରେ ଯାହାର, ବହୁବ୍ରୀହି), ଛବାକ—ଛତୁ, ଜ୍ୟୋତିରିଙ୍ଗଣ (ଜ୍ୟୋତିଃ+ଇନଗ୍+ଅନ୍) ଜୁଳୁ-ଜୁଳିଆ ପୋକ—ଖଦ୍ୟୋତ, ହିଆ—ହୃଦୟ ।

**ସାରକଥା**—ଆଜ ଉତ୍କଳର ପୂର୍ବ କୀର୍ତ୍ତି ସ୍ମୃତିପୂତ ବାରବାଟି ନାନାବଧ ସାଜ ସଜ୍ଜାରେ ସଜ୍ଜିତ ହୋଇଅଛି । ବାରବାଟି ଇତିହାସ ପ୍ରସିଦ୍ଧ । ଏହା ବୀରମାନଙ୍କର ରଙ୍ଗଭୂମି ଥିଲା । ଆଜ ଏହି ପବତ୍ର ବାରବାଟି ପ୍ରାଙ୍ଗଣରେ ଦରବାର ବସିଅଛି । ଯେଉଁ ବାରବାଟି ଦନେ ଉତ୍କଳର ବୀରମାନଙ୍କର ଲୀଳାକ୍ଷେତ୍ର ଥିଲା, ଆଜ ସେହି ବାରବାଟିରେ ବୃଥା ଆଡ଼ମ୍ବରର ଅଭିନୟ ହେଉଅଛି । ପ୍ରାଚୀନ ଉତ୍କଳ ନରପତିମାନଙ୍କର ପ୍ରେତାତ୍ମାସବୁ ସ୍ୱର୍ଗରେ ରହି ଉତ୍କଳର ଏ ହୀନହୀନ ଅବସ୍ଥା ଦେଖି ଦୁଃଖ ଅନୁଭବ କରୁଥିବେ । ଯେଉଁ ମରକତ କେଶରୀ କାଠଯୋଡ଼ୀ କୂଳରେ ଏ ବଶାଳ ପଥରବନ୍ଧ କରାଇଥିଲେ, ସେ ଆଜ ସ୍ୱର୍ଗପୁରରୁ ଉତ୍କଳର ଦୁର୍ଦ୍ଦଶା ଦେଖି କି ଦୁଃଖ ଓ ଲଜ୍ଜା ଅନୁଭବ କରୁ ନ ଥିବେ ! ଆଜ ସେହି ମହାନଦୀ ବହିଯାଉଅଛି । ଦିନେ ପରମାସୁନ୍ଦରୀ କାଞ୍ଚିରାଜକନ୍ୟା ପଦ୍ମାବତୀଙ୍କର ସ୍ନାନରେ ଏହାର ଜଳ ପବତ୍ର ହୋଇଥିଲା । ମହାନଦୀ ଏ ବୃଥା ଆଡ଼ମ୍ବର ଦେଖୁଅଛି ।

ଦରବାରରେ ଯୋଗ ଦେବାପାଇଁ ରାଜା ମହାରାଜାମାନେ ଆସୁ-ଅଛନ୍ତି । ପତାକା ଫର ଫର ହୋଇ ଉଡ଼ୁଅଛି । ବବଧ ବାଦ୍ୟ ବାଜୁଅଛି । କେତେ ହାତୀ ଘୋଡ଼ା ଗୁଳିଅଛନ୍ତି । ଯାନ ବାହନରେ ଗୃହଅଡ଼ ପୂର୍ଣ୍ଣ । ମହିରେ ମହିରେ ତୋପ ଫୁଟୁଅଛି । ଚନ୍ଦ୍ରାତପ ତଳେ ମଞ୍ଚ ପ୍ରସ୍ତୁତ ହୋଇ-ଅଛି । ମଞ୍ଚର ସ୍ତମ୍ଭ ସବୁ ନାନାବଧ ପତ୍ର ପୁଷ୍ପରେ ମଣ୍ଡିତ । ଆସନସବୁ ସଜ୍ଜିତ ହୋଇ ରହିଅଛି । ପ୍ରହରୀମାନେ ଜାକୁଲିମାନ ଅସ୍ତ୍ର ଧରି ବଚରଣ କରୁଅଛନ୍ତି । ଉପାଧିଧାରୀମାନେ ଅଧିକ ନୂତନ ଉପାଧି ପାଇବାକୁ

ଝୁଲୁଅଛନ୍ତି । ଉପାଧି ସଙ୍ଗେ ସଙ୍ଗେ ତାର ଅନୁରୂପ ପୋଷାକ, ତଲ୍‌ୱାରି, ମୋହନମାଳ, ପଗଡ଼ି ପ୍ରଭୃତି ଉପାଧିଧାରୀମାନଙ୍କୁ ଦିଆଯିବ । ମାତ୍ର ଏ ସବୁର କି ମୂଲ୍ୟ ? ଏମାନେ କେହି ଚିରସ୍ଥାୟୀ ନୁହନ୍ତି । ତଲବାର କଳଙ୍କି ଲାଗି କେବେ ନଷ୍ଟ ହୋଇଯିବ । ପୋଷାକ ଚିରିଆ ମୂଷାର ଆହାର ହେବ, କାଳକ୍ରମେ ସବୁ ଧ୍ୱଂସ ପାଇବ । ଆଶ୍ଚର୍ଯ୍ୟର କଥା, ଏହି ମୂଲ୍ୟହୀନ ସମ୍ମାନ ପାଇଁ ଲୋକେ କି ବ୍ୟସ୍ତ ହେଉଅଛନ୍ତି । ଏହି ଅସାର ଉପାଧି ଲୋଭରେ ଲୋକେ ମନୁଷ୍ୟତାକୁ ବଳି ଦେଉଅଛନ୍ତି । ଅନ୍ୟକୁ ସନ୍ତୁଷ୍ଟ କରିବା ପାଇଁ ତାର ପୋଷା କୁକୁର ପରି ଆଚରଣ କରୁଅଛନ୍ତି । ସେମାନେ ସ୍ୱାଧୀନ ଭାବରେ ମତ ଦେଇ ସତ୍ୟାସତ୍ୟ ବିବେଚନା କରି ପାରୁନାହାନ୍ତି । ଯଦି ଲୋକଙ୍କର ପ୍ରକୃତ ଜ୍ଞାନ ଆସନ୍ତା ତେବେ ସେମାନେ ଏହି ଅସାର ଆଡ଼ମ୍ବରରେ ନ ମାତି ସାତ୍ତ୍ୱିକ ଜୀବନ ଯାପନ କରନ୍ତେ । ସେମାନଙ୍କର ମାୟା ମୋହ ଦୂରୀଭୂତ ହୁଅନ୍ତା ଓ ମର୍ତ୍ତ୍ୟଲୋକ ସ୍ୱର୍ଗଭୂମିରେ ପରିଣତ ହୁଅନ୍ତା ।

ଏହି ଦରବାରରେ ଉଚ୍ଚ ଆସନ ପାଇବା ପାଇଁ ସମସ୍ତେ ବ୍ୟାକୁଳ । ପିଲାମାନେ ଖେଳନା ବା ମିଠେଇ ପାଇଁ ଅଧୀର ହେଲା ପରି ରାଜା ମହାରାଜାମାନେ ମଧ୍ୟ ଆସନ ପାଇଁ ଅଧୀର ହେଉଅଛନ୍ତି । କେହି ଉଚ୍ଚ ପଦସ୍ଥ ବୋଲି, କେହି କୁଳୀନ ବୋଲି, କେହି ସେନାପତି ବୋଲି, କେହି ଉଚ୍ଚ ପୁଲିସ କର୍ମଚାରୀ ବୋଲି, କେହି ଡେପୁଟି ବୋଲି ସମସ୍ତେ ଉଚ୍ଚ ଆସନ ପାଇବାକୁ ବ୍ୟାକୁଳ । କେହି ଅବା ଅନ୍ୟର ଦୁଃଖ, କେହି ନିଜର ମନୋଭାବ ପ୍ରକାଶ କରୁଅଛି । ସମସ୍ତେ ଅହମିକା ବଳରେ ଯାକି ହେଉଅଛନ୍ତି । ପ୍ରତ୍ୟେକେ ନିଜର ବଡ଼ିମା ଦେଖାଇବାରେ ବ୍ୟସ୍ତ । କେହି ପୋଷାକର ଆଡ଼ମ୍ବର ଦେଖାଉଅଛି, ସାହେବ ଠାଣି ପ୍ରକାଶ କରୁଅଛି, କେହି ନିଜର ଘଣ୍ଟା ଚେନ୍ ଦେଖାଇ ହେଉଅଛି । ବୁଝିବାକୁ ଗଲେ ଏ ସବୁର କିଛି ମୂଲ୍ୟ ନାହିଁ । ଜୀବନ ରଙ୍ଗଭୂମି ପରି । ନିଜ ନିଜର ଅଭିନୟ ସାରି ସମସ୍ତେ ଚାଲିଯିବେ । କାହାରି ଜନ୍ମ କିମ୍ବା ମୃତ୍ୟୁଦ୍ୱାରା ସଂସାରର କିଛି କ୍ଷତି ବୃଦ୍ଧି ହୁଏ ନାହିଁ । ଦଣ୍ଡ ସାନର ହେବ କେବଳ

ଆମ୍ଭମାନଙ୍କର କପୋଳକଳ୍ପନା । ଜୀବନ କ୍ଷଣସ୍ଥାୟୀ । ଏ ଶରୀର ରୋଗର ଆଧାର । ସୌନ୍ଦର୍ଯ୍ୟର ଗରିମା ଦେଖାଇବା ଘୋର ମୂର୍ଖତା । କାଳ ମୁହୂର୍ତ୍ତକ ମଧ୍ୟରେ ସବୁ ଚୂନା କରିଦେବ ।

ଆଜି ଏ ଦାନ୍ତକାଟି ଦରବାରରେ ଲୋକେ ଆସନ ପାଇଁ କଳହ କରୁଅଛନ୍ତି । ମାତ୍ର ଯମ ରାଜାର ଦରବାରରେ କି ଆସନ ମିଳିବ ସେ କଥା କେହି ଥରେ ହେଲେ ଚିନ୍ତା କରୁନାହିଁ । ହୁଏତ ଅଳ୍ପଦିନ ମଧ୍ୟରେ ଏହି ଦରବାରରେ ବସିବାକୁ ଆସିଥିବା ଅନେକ ଲୋକଙ୍କୁ ଯମରାଜାଙ୍କ ଦରବାରରେ ଉପସ୍ଥିତ ହେବାକୁ ପଡ଼ିବ । ସେ ଦରବାରକୁ ଯିବାପାଇଁ ଗାଡ଼ି ଘୋଡ଼ା ଦରକାର ହେବ ନାହିଁ । ନାନା ରୋଗ ଆସି ଗ୍ରୀବାରଜ୍ଜୁରେ ବାନ୍ଧି ନେବେ । ମୁହୂର୍ତ୍ତେ ମଧ୍ୟ ଅଳଗ ଦେବେ ନାହିଁ । ପତ୍ନୀ, ପୁତ୍ର ଆତ୍ମୀୟ ସ୍ୱଜନ ବିଳାପ କରୁଥିବେ । ସେ ସାର୍ବଜନୀନ ଦରବାରରେ ନିଜେ ଯମରାଜ ସଭାପତି । ତାଙ୍କର ବାମ ହସ୍ତରେ ଅଭ୍ରାନ୍ତ ଘଡ଼ିକା ଓ ଦକ୍ଷିଣ ହସ୍ତରେ ପ୍ରଚଣ୍ଡ କାଳଦଣ୍ଡ । ଏ ମର୍ତ୍ତ୍ୟ ଦରବାରରେ ଯେ ଯେଉଁ ଆସନ ପାଇବାକୁ ଦାବୀ କରୁଅଛି ସେ ଦାବୀ ସେଠାରେ ରହିବ ନାହିଁ । ଏଠାର ନ୍ୟାୟ ବିଚାର ସେଠାରେ ଚିତ୍ରଗୁପ୍ତଙ୍କ ବିଚାରରେ ଓଲଟିଯିବ । ସେ ବିଚାର ଚରମ । ତାର ଅପିଲ ନାହିଁ । ଓକିଲ ମୁକ୍ତାରଙ୍କ ଚତୁରୀ ସେଠାରେ କାର୍ଯ୍ୟକାରୀ ହେବ ନାହିଁ । ସେଠାରେ ଲାଞ୍ଚ ମିଛର ସ୍ଥାନ ନାହିଁ । ହୁଏତ ସେ ଦରବାରରେ ପିଅନ ହାକିମଙ୍କଠାରୁ ଉଚ୍ଚ ଆସନ ପାଇବ । ସେଠାରେ ଉଚ୍ଚପଦ, ସମ୍ପତ୍ତି, ବଂଶମର୍ଯ୍ୟାଦା ଏ ସବୁର କିଛି ମୂଲ୍ୟ ନାହିଁ । ଏଠାରେ କେହି ହୁଏତ ସାହେବ ଆଣି ଦେଇ, ଫଳ ଫୁଲର ଉପହାର ଦେଇ, ଖୋଷାମତି କରି, ଦାନ୍ତ ନଖାଇ ଲୋକଙ୍କର ପ୍ରୀତି ସାଧନ କରୁଅଛି, ମାତ୍ର ଏ ସବୁ ସେ ଦରବାରରେ ଗଣାଯିବ ନାହିଁ । ଏ ପ୍ରକାର ଜନତାର ପ୍ରୀତିସାଧନ ନିରର୍ଥକ । ସେ ଦରବାରରେ ହୁଏତ ଭୋକୀକୁ ଗ୍ରାସେ ଅନ୍ନ ବା ଶୋଷୀକୁ ମୁନ୍ଦାଏ ପାଣି ଦେଇ ଯେତେ ନଗଣ୍ୟ ଲୋକ ତା ଉପରେ ଆସନ ପାଇବେ । ଯେଉଁମାନେ ସାଂସାରିକ ପଦପାଇଁ ବ୍ୟାକୁଳ ସେମାନେ ମହାଭ୍ରମରେ ପଡ଼ିଅଛନ୍ତି । ସାର ଛାଡ଼ି ଅସାରରେ ଭୁଲିଅଛନ୍ତି । ଜଗତକାଆ

ଗୋଳକରୁ ସୃଷ୍ଟି ବୋଲି ମନେ କରୁଅଛନ୍ତି । କ୍ଷଣିକ ଯଶ ପାଇଁ ସେମାନେ ନୈତିକତାକୁ ବଳି ଦେଇଅଛନ୍ତି ଏବଂ ନିଜର ପରକାଳ ନଷ୍ଟ କରୁଅଛନ୍ତି ।

ଚିତ୍ରଗୁପ୍ତର ହୃଦୟ ଅତି କଠୋର । ତାର ପାଞ୍ଜି ଅଭ୍ରାନ୍ତ । ପ୍ରତ୍ୟେକ ଲୋକର କାର୍ଯ୍ୟ ଏପରିକି ତାହାର ମନର ଚିନ୍ତା ମଧ୍ୟ ସେ ଲେଖି ରଖିଥାଏ । ତା ପାଖରୁ କିଛି ଲୁଚି ରହି ନ ପାରେ । ସେ ପାଞ୍ଜି ଅନୁସାରେ ପ୍ରତ୍ୟେକ ଲୋକର ବିଚାର ହେବ । ତେଣୁ ଏ ଦରବାରରେ ଉଚ୍ଚ ଆସନ ପାଇବାକୁ ଆକୁଳ ନ ହୋଇ ସେ ସାର୍ବଜନୀନ ଦରବାର ବିଷୟ ଚିନ୍ତା କରିବା ଉଚିତ । ସେଠାରେ କିପରି ଉଚ୍ଚ ଆସନ ମିଳିବ ସେଥିପାଇଁ ପ୍ରସ୍ତୁତ ହେବା ପ୍ରତ୍ୟେକ ବୁଦ୍ଧିମାନ ଲୋକର କର୍ତ୍ତବ୍ୟ ।

---

## (୨୨) ବର୍ଷା

### ( କବି ୰ ରାଧାନାଥ ରାୟ )

**କବି ପରିଚୟ**—........ ( ୨୭ ପୃଷ୍ଠା ଦେଖ )

କବିଙ୍କର 'ତୁଳସୀସ୍ତବକ' ନାମକ କବିତାରୁ ଏହା ଆନୀତ । ଏଥିରେ ରାମଚନ୍ଦ୍ର ବର୍ଷାଋତୁରେ ପ୍ରସ୍ରବଣ ପର୍ବତରେ ବାସ କରୁଥିବା ସମୟରେ ଲକ୍ଷ୍ମଣଙ୍କୁ ବର୍ଷାକାଳୀନ ଦୃଶ୍ୟ ଦେଖାଇବା ସଙ୍ଗେ କେତେକ ଉପଦେଶ ଦେଉଥିବାର ବର୍ଣ୍ଣନା କରାଯାଇଅଛି । ତୁଳସୀ ଗୋଟିଏ ସୁଗନ୍ଧ ଓ ପବିତ୍ର ପଦାର୍ଥ । ତୁଳସୀର ସ୍ତବକରେ ଅନେକ ତୁଳସୀ ଥିଲା ପରି ଏହି କବିତାରେ ଅନେକ ମୂଲ୍ୟବାନ ଉପଦେଶ ସମାବିଷ୍ଟ ।

**ଶବ୍ଦାର୍ଥ**—(ପୃ ୮୬) ପ୍ରସ୍ରବଣ—ଗୋଦାବରୀ ନଦୀ ତଟରେ ଥିବା ପର୍ବତ ବିଶେଷ; ସୌମିତ୍ରି—(ସୁମିତ୍ରା + ଅପତ୍ୟାର୍ଥରେ ଇ) ଲକ୍ଷ୍ମଣ; ରାଘବ (ରଘୁ + ଅପତ୍ୟାର୍ଥରେ ଅ)—ରଘୁପତି ରାମଚନ୍ଦ୍ର; ଶିଳୀନ୍ଧ୍ର—ଶିଳାନ୍ଧ୍ର ଘ ଛତୁ (ଛତ୍ରା ଉଦ୍ଭିଦ); ଶିଖିଳ (ଶିଖା + ଅସ୍ତ୍ୟର୍ଥେ ଳ)—ଶିଖାଯୁକ୍ତ; ଧୂର୍ଜ —

ଉଦ୍‌ଘାଟିତ; ମେଦୁର-ସ୍ନିଗ୍ଧ; ବିତାନ-ଆକାଶ; ରଘୁରାମ—ରାମଚନ୍ଦ୍ର; ଜୀବନ-ଜଳ; କେକୀ-ମୟୂର; ଉପେକ୍ଷା—ତ୍ୟାଗକରି; ଅନ୍ତରେ—ଅନ୍ତଃକରଣ ଭାବରେ; ଯାଚକ (ଯାଚ୍+ଅକ) ପ୍ରାର୍ଥୀ; (ପୃ ୮୬ପୃଷ୍ଠା) ନୀରଦ (ନୀର—ଦା+ଅ) ମେଘ; ଚପଳା—ବିଦ୍ୟୁତ୍; ଚପଳା—ଚଞ୍ଚଳା, ଅସ୍ଥିର; ଅମ୍ବୁଦ—(ଅମ୍ବୁ—ଦା+ଅ) ମେଘ; ବୁଧ—ଜ୍ଞାନୀ, ପଣ୍ଡିତ; କୋଟି--ଅଗ୍ରଭାଗ; ଶିଖର—ପର୍ବତର ଅଗ୍ରଦେଶ; ଜୀମୂତ—(ଜୀବମାନଙ୍କର ମୂତ) ମେଘ; ଅମ୍ବର—ଆକାଶ; ଶକ୍ର—ଇନ୍ଦ୍ର; କାର୍ମୁକ—ଧନୁ; ଆସ୍ତିକ—ଈଶ୍ୱର ବିଶ୍ୱାସୀ; ବିଗ୍ରହ (ବି-ଗ୍ରହ+ଅ)—ଶରୀର; ଅଭ୍ର—ମେଘ; କ୍ଷୀରୋଦ—କ୍ଷୀର ସମୁଦ୍ର; ଭୃଙ୍ଗ—ଅନ୍ଧକାର; ଶୃଙ୍ଗ—ପର୍ବତ ଶୃଙ୍ଗ; ଭୈରବେ—ଦାରୁଣ ଭାବରେ; ପ୍ରତିରବ—ପ୍ରତିଧ୍ୱନି; ଦରୀ—ପର୍ବତ ଗହ୍ୱର; ଠାଙ୍ଗର—ଶୁଷ୍କ, ନୀରସ; ପାମର—ମୂଢ଼; (ପୃ ୮୭) ଆବିଳ—ମଳିନ; ମହୀ—ପୃଥିବୀ; ନିରନ୍ତେ—ସର୍ବଦା; ସର—ପୁଷ୍କରିଣୀ, ନିମ୍ନଗା (ନିମ୍ନ—ଗମ୍+ଅ, ସ୍ତ୍ରୀ ଆ) ଯେ ନିମ୍ନକୁ ଗମନ କରେ ଅର୍ଥାତ୍ ନଦୀ; ଶାଶ୍ୱତ—ଚିରସ୍ଥାୟୀ ଭଗବାନ; ବିଟପୀ (ବିଟପ+ଅସ୍ତ ଅର୍ଥରେ ଇନ୍)—ପାଦପ; ବ୍ୟଭିଚାରିଣୀ ସ୍ତ୍ରୀ; ଲମ୍ପଟ-ଚରିତ୍ର ପୁରୁଷ; ଗିର—ବାକ୍ୟ; ସ୍ୱତନ୍ତ୍ରା—ସ୍ୱାଧୀନା; ଦର୍ଦ୍ଦୁର—ଭେକ; ପିକ—କୋକିଳ; ମୂକ—ନୀରବ; ବଂଶକୁଞ୍ଜ—ବାଉଁଶ ବଣ; ଜଳପିବା—ବଦ୍ଧିତ କନ୍ଦରା; ଦୂର୍ବାଦଳ—ଦୁବଘାସ; ଧବଳ—ଦଳଦଳିଆ ବର୍ଷା; ରୁକ୍ଷ—ଶୁଷ୍କ, ନୀରସ; ନିଦାଘ—ଗ୍ରୀଷ୍ମକାଳ; (ପୃ ୮୮) ପଲ୍ଲବ—କୋମଳ ପତ୍ର; ପାଦପ —(ପାଦ—ପା+ଅ) ବୃକ୍ଷ; କଦମ୍ବ ବନ୍ଧୁ ମେଘ ମନ୍ଦ୍ର ନିସ୍ୱନ--କଦମ୍ବର ବନ୍ଧୁ, କଦମ୍ବ ବନ୍ଧୁ ଅଟେ ମେଘ; ମନ୍ଦ୍ର ଅଟେ ନିସ୍ୱନ, କଦମ୍ବ ବନ୍ଧୁ ମେଘ ମନ୍ଦ୍ର ନିସ୍ୱନ (ଷଷ୍ଠୀତତ୍, କର୍ମଧା, କର୍ମଧା, ଷଷ୍ଠୀତତ୍) ଘୁଳ—ଗ୍ଲେଡ଼ ଭୂଦା; ଶୋଭା—ଆସ୍ପଦ—ଶୋଭାର ଆସ୍ପଦ—(ଷଷ୍ଠୀତତ୍) ଶୋଭାର ଆଧାର; ଜ୍ୟୋତିଷ୍କ—ଗ୍ରହ, ନକ୍ଷତ୍ର; ଜ୍ୟୋତିରିଙ୍ଗଣ—ଜୁଳୁଜୁଳିଆ ପୋକ; ଖଦ୍ୟୋତ; ଚେଉଁ—ତରଙ୍ଗ ବା ବୁଦବୁଦ; କୋକ—ଚକ୍ରବାକ; ନୀର ସତ୍ତ୍ୱେ—ନୀର ଥିଲେହେଁ; ଉଷର—ମରୁଭୂମି (ପୃ ୮୯) ନିବିଡ଼ତମ—ଘନ ଅନ୍ଧକାର; ମଣ୍ଡୂକ—ଭେକ; ଅହି—ସର୍ପ; ଶଦଳ—ଘାସ; ଉତ୍ତର୍ଜ୍ଜନା

(ଜନ୍—ଭୀ+ଅନ୍) ଭଜୁଥିବା; ଅରଡେ—ଦୁଃଖରେ; ପଙ୍କଜ (• ପଙ୍କ। ଜ୍+ଅ)—ପଦ୍ମ;।

। ସାରକଥା—ରାମଚନ୍ଦ୍ର ଲକ୍ଷ୍ମଣଙ୍କ ସହିତ ପ୍ରସ୍ରବଣ ପର୍ବତରେ ବାସ କରୁଥିଲେ । ସେହି ପର୍ବତର ପାଦଦେଶରେ ଗୋଦାବରୀ ନଦୀ ଝର୍ଝର ଶବ୍ଦରେ ପ୍ରବାହିତ ହେଉଥିଲା । ଏହି ପର୍ବତ ଉପରେ ଅନେକ ଜଳଧାର ବହି ଆସୁଥିଲା । ବର୍ଷା ଋତୁରେ ଆକାଶରେ ସ୍ନିଗ୍ଧ ମେଘମାଳାକୁ ଦେଖି ରାମଚନ୍ଦ୍ର ଲକ୍ଷ୍ମଣଙ୍କୁ କହିଲେ ।

ହେ ଲକ୍ଷ୍ମଣ, ଦେଖ, ଆକାଶରେ ମେଘମାଳାକୁ ଦେଖି ମୟୂର ଆନନ୍ଦରେ ନାଚୁଅଛି । ଭକ୍ତ ମଧ୍ୟ ଠିକ୍ ସେହିପରି ସଂସାରର ମାୟାମୋହ ତ୍ୟାଗ କରି ଆନନ୍ଦ ଅନୁଭବ କରେ । ମେଘ ଅକାତର ଭାବରେ ଜଳଦାନ କରୁଅଛି । ଯେଉଁ ଦାତା ପ୍ରାର୍ଥୀର ମନ ଜାଣି ଦାନ କରେ ସେ ଯଥାର୍ଥରେ ପ୍ରଶଂସାର ପାତ୍ର ।

ଖଳ ଲୋକର ପ୍ରୀତି ଯେପରି ଅସ୍ଥାୟୀ, କାଳ ମେଘମାଳା ମଧ୍ୟରେ ବିଦ୍ୟୁତର ସ୍ଫୁରଣ ସେହିପରି କ୍ଷଣସ୍ଥାୟୀ । ମେଘରାଶି ନିମ୍ନମୁଖ ହୋଇ ଜଳବର୍ଷଣ କରୁଅଛନ୍ତି । ସେହିପରି ଜ୍ଞାନୀ ଲୋକେ ବିଦ୍ୟାଲାଭ କରି ବିନମ୍ର ହୋଇଥାନ୍ତି ।

ଇନ୍ଦ୍ରଧନୁ ଦୁଇଟି ପର୍ବତ ଶିଖରରେ ଅଗ୍ରଭାଗ ଦ୍ୱୟକୁ ସ୍ଥାପନ କରି, ବିଚିତ୍ର ବର୍ଣ୍ଣ ସମ୍ଭାରକୁ ଆକାଶରେ ପ୍ରକାଶ କରି ମେଘର ଶିରୋଦେଶକୁ ଉଜ୍ଜ୍ୱଳମାନ କରୁଅଛି । ସେହିପରି ଆଶା ଈଶ୍ୱରବିଶ୍ୱାସୀମାନଙ୍କର ମୂର୍ଦ୍ଧ୍ୱମଣ୍ଡଳକୁ ଉଜ୍ଜ୍ୱଳ କରିଥାଏ ।

ଯେତେକ ସ୍ଥଳରେ ପର୍ବତର କାଳ ଶରୀରରେ ଧବଳବର୍ଣ୍ଣର ମେଘଖଣ୍ଡ ଶୋଭା ପାଉଅଛି । ତାକୁ ଦେଖିଲେ ମନେ ହେଉଛି ସତେ ଅବା କ୍ଷୀର ସାଗରର ଫେଣ ଛିଟିକି ପଡ଼ି ବିଷ୍ଣୁଙ୍କ ଶରୀରରେ ଲାଗିଯାଇଛି ।

(ବିଷ୍ଣୁଙ୍କ ଶରୀର ପର୍ବତ ପରି କାଳମେଘ ବର୍ଣ୍ଣ, କ୍ଷୀରସାଗରର ଫେଣ ମେଘ ପରି ଶୁକ୍ଳବର୍ଣ୍ଣ) ।

ଜଳ ପ୍ରପାତ ଝର୍ଣ୍ଣା ଗର୍ଜନ ସହକାରେ ଗୋଟିଏ ପର୍ବତ ଶିଖରରୁ ଅନ୍ୟ ପର୍ବତ ଶିଖରକୁ ଡେଇଁ ପଡ଼ୁଅଛି । ଧର୍ମର ପ୍ରଭାବରେ ବିବେକ ହୃଦୟ ମଧ୍ୟରୁ ତାହାର ବାଣୀ ଶୁଣାଇଲା ପରି ପର୍ବତ ଗହ୍ୱରରୁ ସେହି ଗର୍ଜନର ପ୍ରତିଧ୍ୱନି ଉଠୁଛି ।

ସାଧୁଲୋକେ ଯେପରି ଖଳ ଲୋକଙ୍କର କୁବାକ୍ୟ ସହ୍ୟ କରିଥାନ୍ତି ସେହିପରି ପର୍ବତମାନେ ଧାରାପାତ ସହ୍ୟ କରୁଅଛନ୍ତି, ସାଧୁଜନଙ୍କ ସହବାସ ଫଳରେ ପାଷଣ୍ଡଠାରେ ମଧ୍ୟ ହରିପ୍ରେମ ଜାତ ହେଲା ପରି ତାଙ୍କର ଦେହରେ ଝର ଫିଟି ଯାଇଛି ।

ଗିରିନଦୀମାନେ କୂଳ ଅତିକ୍ରମ କରି ବହି ଯାଉଅଛନ୍ତି । ହୀନ ଲୋକେ ସାମାନ୍ୟ ଧନ ପାଇଲେ ଗର୍ବ କଲା ପରି ଏହି ଗିରି ନଦୀମାନେ ଅଳ୍ପ ଜଳରେ ମଧ୍ୟ ଗର୍ବ ପ୍ରକାଶ କରୁଅଛନ୍ତି । କିନ୍ତୁ ଏମାନେ ସମସ୍ତେ ଗୋଦାବରୀର ଅଙ୍ଗନ୍ୟ ନେଇଅଛନ୍ତି । ବାସ୍ତବରେ ମହନ୍ତ ଆଶ୍ରା ବିନା ମୁକ୍ତି ନାହିଁ ।

ପ୍ରାଣୀ ମାୟାରେ ବିଜଡ଼ିତ ହୋଇ ହୀନ ହେଲା ପରି ନବୀନ ବୃଷ୍ଟି ଜଳ ପୃଥିବୀକୁ ସ୍ପର୍ଶ କରି ମଳିନ ହେଉଅଛି । ସାଧୁଲୋକର ହୃଦୟ ସାତ୍ତ୍ୱିକ ଗୁଣରେ ପୂର୍ଣ୍ଣ ହେଲା ପରି ପୁଷ୍କରିଣୀ ସବୁ ବୃଷ୍ଟି ଜଳରେ ପୂର୍ଣ୍ଣ ହେଲେ ।

ଯେପରି ଭକ୍ତର ହୃଦୟ ସର୍ବଦା ଚିରନ୍ତନ ଭଗବାନଙ୍କ ଆଡ଼କୁ ଧାବିତ ହୁଏ ସେହିପରି ନଦୀଜଳ ସମୁଦ୍ରକୁ ପ୍ରଧାବିତ ହେଉଅଛି । ଭକ୍ତ ଭଗବାନଙ୍କୁ ଲାଭ କଲେ ନିଜର ଅସ୍ତିତ୍ୱକୁ ହରାଇ ଦିଏ । ସେହିପରି ନଦୀ ଜଳ ସମୁଦ୍ରରେ ପଡ଼ିଲେ ତାହାର ସ୍ୱାତନ୍ତ୍ର୍ୟ ଲୋପ ହୁଏ ।

ବାଡ ପୁରୁଷର ଗୂଢ଼ କଥାରେ ବିଟପୀର ମନର ଦମ୍ଭ ଭାଙ୍ଗିଗଲା ପରି ଜଳ ସ୍ରୋତରେ ତୀରବର୍ତ୍ତୀ ବୃକ୍ଷସବୁ ଉପୁଡ଼ି ପଡ଼ନ୍ତି । ମାତ୍ର ପର୍ବତ ଅଟଳ ଭାବରେ ଦଣ୍ଡାୟମାନ ଥାଏ । କାମୀ ପୁରୁଷର ଗୂଢ଼ ବାକ୍ୟରେ ସତୀରମଣୀର ହୃଦୟ ବିଚଳିତ ହେବା ଅସମ୍ଭବ ।

ପଞ୍ଚେନ୍ଦ୍ରିୟ ପ୍ରଲୋଭନସମୂହକୁ ଲଙ୍ଘନ କଲାପରି ନଦୀ ସ୍ରୋତ ବନ୍ଧକୁ ଲଙ୍ଘି ଯାଏ । ସ୍ୱାଧୀନା ରମଣୀ ଯେପରି ମର୍ଯ୍ୟାଦାର ସୀମା ଲଙ୍ଘନ କରିଥାଏ ସେହିପରି ବୃଷ୍ଟି ଜଳ କ୍ଷେତକୁ ଅତିକ୍ରମ କରି ବହିଯାଏ ।

ମୂର୍ଖ ଲୋକଙ୍କ ସଭାରେ ଧାର୍ମିକ ଲୋକ ନୀରବ ରହିବା ସ୍ୱାଭାବିକ । ସେହିପରି ବର୍ଷା ଋତୁରେ ବେଙ୍କର ରାବ ଶୁଣି କୋକିଳ ନୀରବ ହୋଇ ରହେ । ଯେଉଁମାନେ ବହୁଭାଷୀ ସେମାନେ ଅଯଥା ବାକ୍ୟବ୍ୟୟ କରିଥାନ୍ତି, ସେହିପରି ଭାବୁକମାନେ ଦାଉଁଶ ବଣ ମଧ୍ୟରେ ରହି ଅବିରତ ରାବ କରୁଅଛନ୍ତି ।

ଶୁଷ୍କ ବୈରାଗ୍ୟ ସହିତ ଭକ୍ତିରସର ସଞ୍ଚାର ହେଲେ ସାଧୁମାନଙ୍କର ନୀରସ ହୃଦୟ ଯେପରି ସରସ ହୁଏ ସେହିପରି ପ୍ରଚଣ୍ଡ ଗ୍ରୀଷ୍ମ ହେତୁ ରୁକ୍ଷ ପୃଥିବୀ ବକ୍ଷରେ ବର୍ଷା ହେବାରୁ ହରିଦ୍‌ବର୍ଣ୍ଣର ଦୂର୍ବାଦଳ ଜନ୍ମି ପୃଥିବୀକୁ ସରସ ଓ ସୁନ୍ଦର କରିଦେଲା ।

ସାଧକର ହୃଦୟରେ ବିବେକର ଉଦୟ ହେଲା ପରି ବୃକ୍ଷମାନଙ୍କର ନୂତନ ପତ୍ର ଦେଖା ଦେଲା । ମାତ୍ର ରାଜ୍ୟରେ ସୁଶାସନ ଥିଲେ ଖଣ୍ଡମାନେ ଯେପରି ଦରିଦ୍ର ହୋଇଯାନ୍ତି ସେହିପରି କେବଳ ଅର୍କ ବୃକ୍ଷର ପତ୍ରମାନ ଝଡ଼ି ପଡ଼ିଲେ ।

ଭକ୍ତର ରକ୍ଷାକର୍ତ୍ତା ଭଗବାନଙ୍କର ନାମକୀର୍ତ୍ତନ କଲେ ଭକ୍ତର ଶରୀର ରୋମାଞ୍ଚିତ ହେଲାପରି ମେଘର ଗମ୍ଭୀର ଧ୍ୱନି ଶ୍ରବଣରେ ପର୍ବତ ଅରଣ୍ୟରେ କଦମ୍ବ ପୁଷ୍ପ ବିକଶିତ ହେଲା ।

ବିଧର୍ମୀ ରାଜାର ରାଜତ୍ୱରେ ଧର୍ମଶାସ୍ତ୍ର ବିଲୁପ୍ତ ହେଲାପରି, ବହୁଳ ଗୁଳ୍ମ ଜନ୍ମିବାରୁ ପଥ ଲୁଚିଗଲା । ପରୋପକାରୀ ଲୋକ ବିପୁଳ ସମ୍ପତ୍ତି ପାଇଲା ପରି ପୃଥିବୀ ଶସ୍ୟରେ ପୂର୍ଣ୍ଣ ହେବାରୁ ଅତି ମନୋରମ ଦେଖାଗଲା ।

ଏହି ବର୍ଷାକାଳରେ ଆକାଶରୁ ସୂର୍ଯ୍ୟ, ଚନ୍ଦ୍ର, ଗ୍ରହତାରା ପ୍ରଭୃତି ଲୁଚି ଯାଉଅଛନ୍ତି; ମାତ୍ର ଜୁଳୁଜୁଳିଆ ପୋକମାନେ ଦୀପ୍ତି ଦେଖାଇ ଉଡ଼ିଅଛନ୍ତି । ବାସ୍ତବିକ ମୂର୍ଖ ରାଜ୍ୟରେ ଗୁଣୀଜନମାନଙ୍କର ଆଦର ରହେ ନାହିଁ; ନିର୍ଗୁଣ ଲୋକେ ଆଦରର ପାତ୍ର ହୁଅନ୍ତି ।

ସାଧୁଲୋକେ ହୃଦୟରୁ ଅହଂବୁଦ୍ଧିମା ଦୂର କଲା ପରି କୃଷକମାନେ ଶସ୍ୟକ୍ଷେତ୍ରରୁ ବାଳୁଙ୍ଗା ଉପାଡ଼ି ଫିଙ୍ଗି ଦେଉଅଛନ୍ତି । ଅବିବେକୀ ରାଜାର ରାଜ୍ୟରୁ ପଣ୍ଡିତମାନେ ଚାଲିଗଲା ପରି ଚକ୍ରବାକମାନେ ଜଳାଶୟ ତ୍ୟାଗ କରି ଚାଲି ଗଲେ ।

ବିକାରର କାରଣ ଥିଲେ ସୁଦ୍ଧା ସାଧୁ ଲୋକଙ୍କ ହୃଦୟରେ କାମ ପ୍ରବୃତ୍ତି ଜାଗ୍ରତ ହୁଏ ନାହିଁ । ବର୍ଷାକାଳରେ ଏତେ ଜଳ ସତ୍ତ୍ୱେ ନୀରସ ବାଲୁକାମୟ ମରୁଭୂମିରେ ତୃଣ ସୁଦ୍ଧା ଜନ୍ମେ ନାହିଁ । ସୁଶାସନ ନ ଥିଲେ, ରାଜ୍ୟ ଯେପରି ପ୍ରଜାମାନଙ୍କ ଦ୍ୱାରା ପୂର୍ଣ୍ଣ ହୁଏ ସେହିପରି ବନପ୍ରଦେଶ ବିବିଧ ଜନ୍ତୁଙ୍କ ଦ୍ୱାରା ପୂର୍ଣ୍ଣ ହୋଇଅଛି ।

ଦିବ୍ୟଜ୍ଞାନ ପ୍ରକାଶ ପାଇଲେ ଯେପରି ଇନ୍ଦ୍ରିୟ ପ୍ରବୃତ୍ତି ପ୍ରତିହତ ହୁଏ ସେହିପରି ପଥିକମାନେ ସ୍ଥାନେ ସ୍ଥାନେ ବୃଷ୍ଟି ହେତୁରୁ ଅଟକି ଯାଉଅଛନ୍ତି । କୁପୁତ୍ର ବଂଶ ଧର୍ମ ଓ ସମ୍ପତ୍ତିର ଧ୍ୱଂସ କଲାପରି ସମୟେ ସମୟେ ପ୍ରବଳ ପବନ ମେଘମାନଙ୍କୁ ବିତାଡ଼ିତ କରୁଅଛି ।

କେତେବେଳେ ନିବିଡ଼ ଅନ୍ଧକାର ପୃଥିବୀକୁ ଆବୃତ କରି ଦେଉଅଛି; ପୁଣି ପରକ୍ଷଣରେ ପ୍ରଚଣ୍ଡ ଖରା ବ୍ୟାପି ଯାଉଅଛି । ଠିକ୍ ସେହିପରି କୁସଙ୍ଗ ଫଳରେ ଜ୍ଞାନର ବିନାଶ ହୁଏ ଓ ସୁସଙ୍ଗ ଦ୍ୱାରା ଜ୍ଞାନର ବିକାଶ ହୁଏ । ଯାହାର ହୃଦୟ କଳୁଷିତ ସେ ପରର ଗୁଣ ଗ୍ରହଣ କରିବାକୁ ଅକ୍ଷମ ହୁଏ । ସେହିପରି ଆଶ୍ରମ ପୁଷ୍କରିଣୀର ଜଳ ଆବିଳ ହୋଇଥିବାରୁ ଛଟବର୍ଣ୍ଣୀ ବକ ସେଥିରେ ପ୍ରତିବିମ୍ବିତ ହେଉନାହିଁ ।

ଦେଖ, ପୁଷ୍କରିଣୀ ଜଳରେ ଗୋଟିଏ ଲୋକକୁ ସର୍ପ ଗ୍ରାସ କରିବାରେ ଲାଗିଛି । ସେ ଭେକ ପୁଣି ଉପରେ ଉଡ଼ୁଥିବା ଗୋଟିଏ କଙ୍କିଛୁଆକୁ ଛନ୍ଦୁଁକି ଗିଳି ଦେଉଅଛି । ଜଗତରେ ମଧ୍ୟ ସନ୍ତତ ଏହିପରି ଘଟୁଅଛି । ମନୁଷ୍ୟ କାଳଗ୍ରାସରେ ପଡ଼ି ଅବିରତ ବ୍ୟଥିତ ହେଉଥାଏ । ନାନା ଦୁର୍ବିପାକରେ ପଡ଼ି ମଧ୍ୟ ସେ ସଂସାରର ଭୋଗ ଲିପ୍ସା ଚରିତାର୍ଥ କରିବାକୁ ଚେଷ୍ଟା କରୁଥାଏ ।

ବର୍ଷାଋତୁ ବୃକ୍ଷଲତାମାନଙ୍କର ପରମ ବନ୍ଧୁ । ମାତ୍ର ବର୍ଷା ହେଲେ ପଦ୍ମବନ ବିନାଶ ହୁଏ । ଏଥିରେ ଆଶ୍ଚର୍ଯ୍ୟର କଥା ନାହିଁ; କାରଣ ସମ୍ପତ୍ତିର ଆଧିକ୍ୟ ବିନାଶର ହେତୁ ହୋଇଥାଏ । ତେଣୁ ଜଳର ପ୍ରାଚୁର୍ଯ୍ୟ ପଦ୍ମବନର ବିନାଶର କାରଣ ହୁଏ ।

---

# ୨୪ । ସୀତା ବନବାସ

## ( କବି ୬ ମଧୁସୂଦନ ରାଓ )

**କବି ପରିଚୟ**—୧୮୫୩ ମସିହା ଜାନୁଆରୀ ମାସ ୨୯ ତାରିଖ ଶ୍ରୀପଞ୍ଚମୀ ତିଥିରେ ମଧୁସୂଦନ ପୁରୀରେ ଜନ୍ମ ଗ୍ରହଣ କରିଥିଲେ । ସେ ଜାତିରେ ମରହଟ୍ଟା ଯନ୍ତ୍ରୀୟ । ତାଙ୍କର ପିତାମହ ସଦାଶିବ ରାଓ ଓଡ଼ିଶାକୁ ଆସି ବସବାସ କରିଥିଲେ । ତାଙ୍କ ପିତା ଭଗୀରଥି ରାଓ ପୁଲିସ କାର୍ଯ୍ୟ କରୁଥିଲେ । ମଧୁସୂଦନ ଗୋପ, ପୁରୀ ଓ କଟକରେ ଶିକ୍ଷା ପାଇଥିଲେ ୧୮୭୯ ଖ୍ରୀଷ୍ଟାବ୍ଦରେ ସେ ଏଫ୍, ଏ, ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଯାଜପୁର ଓ ତତ୍ପରେ ବାଲେଶ୍ୱରରେ ଶିକ୍ଷକତା କରିଥିଲେ । ସେ ସରକାରଙ୍କ ଶିକ୍ଷା ବିଭାଗରେ ପ୍ରବେଶ କରି ଶେଷରେ ଓଡ଼ିଶାର ଶିକ୍ଷାବିଭାଗୀୟ ଇନ୍ସପେକ୍ଟର ହୋଇ ପାରିଥିଲେ । ପୁରୀରେ ପଢୁଥିବା ସମୟରେ ସେ ରାଧାନାଥଙ୍କୁ ଶିକ୍ଷକ ରୂପେ ପାଇଥିଲେ । ବାଲେଶ୍ୱରରେ କାର୍ଯ୍ୟ କରୁଥିବା ବେଳେ ସେ ଫକୀରମୋହନ ଓ ରାଧାନାଥଙ୍କ ସହ ସାହିତ୍ୟ ଚର୍ଚ୍ଚା କରିବାର ସୁଯୋଗ ପାଇଥିଲେ । ସେ ବାଲ୍ୟକାଳରୁ ଅତ୍ୟନ୍ତ ଧର୍ମ ପରାୟଣ ଥିଲେ । କଲିକତାର ଜନୈକ ବ୍ରାହ୍ମ ଅଧ୍ୟାପକଙ୍କ ପ୍ରଭାବରେ ସେ ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ । ୧୯୧୨ ଖ୍ରୀଷ୍ଟାବ୍ଦରେ ତାଙ୍କର ପରଲୋକ ଘଟିଥିଲା ।

ଛନ୍ଦମାଳା, ବାଳ ରାମାୟଣ, କୁସୁମାଞ୍ଜଳି, ବସନ୍ତଗାଥା, ଉତ୍କଳଗାଥା, ସଙ୍ଗୀତମାଳା, ଉତ୍ତର ରାମଚରିତର ଓଡ଼ିଆ ଅନୁବାଦ ପ୍ରଭୃତି ତାଙ୍କର ଓଡ଼ିଆ ସାହିତ୍ୟକୁ ଦାନ ଅଟେ । ତାଙ୍କର ରଚନା ଉଚ୍ଚ ଭାବସମ୍ପନ୍ନ । ତାଙ୍କର କବିତାମାନଙ୍କରେ ଧର୍ମପରାୟଣତାର ପରିଚୟ ମିଳେ । ଆଧୁନିକ ଓଡ଼ିଆ ସାହିତ୍ୟରେ ରାଧାନାଥଙ୍କ ପରି ମଧୁସୂଦନ ମଧ୍ୟ ଗୋଟିଏ ବିଶେଷ ସ୍ଥାନର ଅଧିକାରୀ ହୋଇଅଛନ୍ତି ।

ଶବ୍ଦାର୍ଥ—(ପୃ ୧୩) ଅଗ୍ରଜ (ଅଗ୍ର-ଜନ୍+ଅ) ଜ୍ୟେଷ୍ଠଭ୍ରାତା; ଅଗ୍ରେ ବା ଆଗରୁ ଜନ୍ମ କରେ ଯେ (ଉପପଦ ତତ୍); ରାମ-ହୃଦୟ-ଜ୍ୟୋତ୍ସ୍ନା—ରାମଙ୍କର ହୃଦୟର ଜ୍ୟୋତ୍ସ୍ନା (୬ଷ୍ଠୀ ତତ୍) ରାମଙ୍କ ହୃଦୟରେ ଯେ ଜ୍ୟୋତ୍ସ୍ନା ପରି ସ୍ନିଗ୍ଧତା ସମ୍ପାଦନ କରନ୍ତି; ବୈଦେହୀ (ବିଦେହ+ଅପତ୍ୟାର୍ଥେ ଅ, ସ୍ତ୍ରୀ ଈ) ବିଦେହ ରାଜକନ୍ୟା ସୀତା; ଭାଗୀରଥୀ—ଗଙ୍ଗା; ଘୋଟକ—ଅଶ୍ୱ; ସ୍ୟନ୍ଦନ—ରଥ; ବିଶ୍ୱମ୍ଭରା—ପୃଥିବୀ; ଜୀମୂତ—ମେଘ; ଭାସ୍କର (ଭାସ୍-କୃ+ଅ) ସୂର୍ଯ୍ୟ; ଅମ୍ବର—ଆକାଶ; ଜାନକୀ (ଜନକ-ଅପତ୍ୟାର୍ଥେ ଅ, ସ୍ତ୍ରୀ ଈ) ସୀତା; କନକ—ସ୍ୱର୍ଣ୍ଣ; ପ୍ରଭାକର—ସୂର୍ଯ୍ୟ; ମୈଥିଳୀ (ମିଥିଳା-ଅପତ୍ୟାର୍ଥେ ଅ, ସ୍ତ୍ରୀ ଈ) ମିଥିଳା ରାଜକନ୍ୟା ସୀତା; ବିବଶା—ଅଧୀରା; ଶୀକର—ଜଳକଣା; ଶୀକର ଶୀତବାୟୁ—ଶୀକର ଦ୍ୱାରା ଶୀତ; ଶୀକର ଶୀତ ଅଟେ ବାୟୁ (୩ୟା ତତ୍; କର୍ମଧା) (ପୃ ୧୪) ସାଧ୍ୱୀ—(ସାଧୁ+ସ୍ତ୍ରୀଲିଙ୍ଗରେ ଈ) ସତୀ; କୁରଙ୍ଗୀ—କପୋତୀ; ପଦ ନଳିନ—ପାଦପଦ୍ମ; ଦାବାଗ୍ନି—ବନାଗ୍ନି; ସ୍ନେହସଲିଳ—ସ୍ନେହ ରୂପକ ସଲିଳ [ରୂପକ କର୍ମଧା]; ସ୍ନେହପାତ୍ର—ହୃଦବାନ; ସୌମ୍ୟ—ମନୋହର; ସମ୍ଭବ—ଶାନ୍ତ ଜନିତ; ଜୀବିତେଶ—ଜୀବିତର ଈଶ [୬ଷ୍ଠୀ ତତ୍] ପ୍ରାଣନାଥ; ଦେବର—ଦିଅର [[illegible]]; ଜାହ୍ନବୀ (ଜହ୍ନୁ+ଅପତ୍ୟାର୍ଥେ ଅ, ସ୍ତ୍ରୀ ଈ) ଗଙ୍ଗା; କର୍ଣ୍ଣଧାର—ନୌକାର ମଙ୍ଗୁଆଳ; ପ୍ରଭଞ୍ଜନ—ପ୍ରବଳ ପବନ; କ୍ଷଣ—[illegible], କଳେବର—ଶରୀର; ଭବଜଳ—ଭବ ରୂପକ ଜଳ [ରୂପକ କର୍ମଧା]; ପାପୀୟସୀ (ପାପ+ଈୟସ୍, ସ୍ତ୍ରୀ ଈ) ପାପିନୀ, ପଦରାଜୀବ—ପାଦପଦ୍ମ; କୁରଙ୍ଗୀ—କପୋତୀ; ବନସ୍ଥଳ—ବନଭୂମି; [ପୃ ୧୬] ବର୍ହୀ—ମୟୂର; ଭକ୍ଷଣ—ଭୋଜନ; ମହୀରୁହ [ମହୀ-ରୁହ+ଅ] ବୃକ୍ଷ; ଅନ୍ତର୍ବତ୍ନୀ—ଆସନ୍ନପ୍ରସବା; ସମିଧ—ହୋମକାଷ୍ଠ; ପର୍ବତ—ପର୍ବତ; ହୋମ ସାଧନ—ହୋମର ଉପକରଣ, ପ୍ରାନ୍ତର—ପ୍ରାନ୍ତଦେଶ; କ୍ରୂର—ନିର୍ଦ୍ଦୟ; ନିଷାଦ—ଶବର; କ୍ରୂର ନିଷାଦ—ଶରବିଦ୍ଧ କ୍ରୌଞ୍ଚ-କ୍ରୂର ଅଟେ ନିଷାଦ, ତାହାର ଶର, ତଦ୍ଦ୍ୱାରା ବିଦ୍ଧ ଅଟେ କ୍ରୌଞ୍ଚ [କର୍ମଧା, [illegible], [illegible], କର୍ମଧା]; କ୍ରୌଞ୍ଚ—ବକ ଜାତୀୟ ପକ୍ଷୀ; ଆକ୍ରନ୍ଦନ—କ୍ରନ୍ଦନ; ଶଶାଙ୍କ-ଶଶ ଅଙ୍କରେ

ଯାହାର [ବନ୍ଧୁଙ୍କର] ଚନ୍ଦ୍ର; ମୁନିପୁଙ୍ଗବ—ମୁନିମାନଙ୍କ ମଧ୍ୟରେ ପୁଙ୍ଗବ [ଷଷ୍ଠୀ ତତ୍] ମୁନିଶ୍ରେଷ୍ଠ; ବଶୀଳପଶୀ—ବଶୀଳ ପଶଃ ଯାହାର [ବହୁବ୍ରୀ] ଗ୍ରବଣ ଅରି—ଗ୍ରବଣ ଅରି ଯାହାର [ବହୁବ୍ରୀ] ଅଥବା ଗ୍ରବଣର ଅରି (ଷଷ୍ଠୀ ତତ୍) ଗ୍ରମଚନ୍ଦ୍ର; [ପୃ ୧୨] ଅବଗାହ—ସ୍ନାନକରି; ସୈକତ— ବାଲୁକା; ବଳକ୍ରିୟା—ପୂଜାବଶେଷ; ନୀବାର ବୀଜ—ବନଧାନ୍ୟ; [ପୃ୧୮] ଶ୍ରୁତି—କର୍ଣ୍ଣ ସାନ୍ଦ୍ରଛ—ସନ୍ଧ୍ୟାକାଳ; ଶୟାନ—[ଶୀ+ଆନ] ଶୋଇଥିବ; ବ୍ରୋମନ୍ଥ—ପାକୁଳି କରିବା; ନୟନ ବାରି। ଚକ୍ଷୁର ଜଳ ବା ଲୋତକ।

ସାରକଥା—ଲକ୍ଷ୍ମଣ ଜ୍ୟେଷ୍ଠ ଭ୍ରାତାଙ୍କ ଆଦେଶରେ ଶ୍ରୀରାମଙ୍କର ହୃଦୟହାରିଣୀ ସୀତାଙ୍କୁ ରଥରେ ବସାଇ ନେଇ ଗଙ୍ଗା ତଟବର୍ତ୍ତୀ ବନ ପ୍ରଦେଶରେ ବର୍ଜନ କରି ଆସିଲେ। ସେହି ଆସିଲାବେଳେ ତାଙ୍କର ହୃଦୟ ଏହି କ୍ରୁର କାର୍ଯ୍ୟରେ ନିତାନ୍ତ ବ୍ୟଥିତ ହେଲା। ଲକ୍ଷ୍ମଣଙ୍କର ରଥ ଯୋଗରି କି ସୀତା ନିର୍ବାସନ ଦେଖି ହାହାକାର ଶବ୍ଦ କରି ଫେରିଲା। ସୀତାଙ୍କର ଦୁଃଖରେ ତାଙ୍କର ଜନନୀ ପୃଥିବୀ ଦେବୀ କମ୍ପି ଉଠିଲେ। ରଘୁବଂଶର ପତାକା ଧ୍ୱଜା ଲାଗି ରଥ ଭୁଲିଗଲେ। ସୀତାଦେବୀଙ୍କର ଏ ଦୁର୍ବିପାକ ସହ୍ୟ କରି ନ ପାରି ସୂର୍ଯ୍ୟଦେବ ଆକାଶରେ ଲୁଚି ରହିଲେ। ଲକ୍ଷ୍ମଣଙ୍କର ରଥ ଦୃଷ୍ଟିପଥରୁ ଅନ୍ତର୍ହିତ ହୁଅନ୍ତେ ସୀତାଦେବୀ ମୂର୍ଚ୍ଛିତା ହୋଇ ପଡ଼ିଲେ। ଭାଗୀରଥୀ ଶୀକରଯୁକ୍ତ ମନ୍ଦ ପବନ ବାଜିବାରୁ କେତେକ ସମୟ ପରେ ସେ ଚୈତନ୍ୟ ଲାଭ କଲେ। ସେ କ୍ରନ୍ଦନ କରି ବିଳାପ କରିବାକୁ ଲାଗିଲେ।

ହେ ଦୟାମୟ ରଘୁରାଜ; ଏ ଦାସୀକୁ କଣ ସତେ ଆପଣଙ୍କ ପାଦପଦ୍ମ ନିକଟରୁ ଚିରକାଳ ପାଇଁ ଅନ୍ତର କରିଦେଲ। ସେ ପାଦପଦ୍ମକୁ ଛାଡ଼ି ଏ ଦାସୀ କପରି ଜୀବନ ଧାରଣ କରିବ? ଅଶରଣୀ ସୀତାର ଏ ଜଗତରେ ତୁମ୍ଭ ଛଡ଼ା ଆଉ କିଏ ଅଛି? ଯେତେବେଳେ ଏ ହୃଦୟ ଦୁଃଖରେ ଦଗ୍ଧୀଭୂତ ହେବ ସେତେବେଳେ କିଏ ସ୍ନେହବାରି ବର୍ଷଣ କରି ତାହା ଶୀତଳ କରିବ? ସତେ କଣ ଏ ହତଭାଗିନୀ ତୁମ୍ଭର ଶ୍ରୀମୁଖ ଦର୍ଶନ-ସୁଖରୁ ଚିରଦିନ ପାଇଁ ବଞ୍ଚିତା ହେଲା? ତୁମ୍ଭ ଶ୍ରୀମୁଖର ମଧୁର ବାକ୍ୟ

ଶୁଣିବାର ସୌଭାଗ୍ୟ ଆଉ ଲାଭ ହେବ ନାହିଁ ? ତୁମ୍ଭ ଛଡ଼ା ମୋର ଆଉ କିଏ ଏ ସଂସାରରେ ଅଛି ? ଏ ସଂସାର ମୋ ପକ୍ଷରେ ଏବେ ଦଗ୍ଧ ଅରଣ୍ୟ ପରି ବୋଧ ହେଉଅଛି । ଲକ୍ଷ୍ମଣ ମୋତେ ଯେଉଁ ନୌକାରେ ଭାଗୀରଥୀ ପାର କରାଇ ଆଣିଲେ ସେ ନୌକା ଏବେ ନାବିକହୀନ ହୋଇ ନଦୀ ବକ୍ଷରେ ଇତଃସ୍ତତଃ ଭାସୁଅଛି । ଯେ କୌଣସି ମୁହୂର୍ତ୍ତରେ ତରଙ୍ଗର ଆଘାତରେ ତାହା ଧ୍ୱଂସ ହୋଇପାରେ । ଆଜି ମୋର ଦଶା ସେହି ନୌକା ପରି । ମୁଁ ତୁମ୍ଭ ଶ୍ରୀଚରଣର ଦାସୀ । ଆଜି ସେ ପାଦପଦ୍ମକୁ ଛାଡ଼ି ମୁଁ ପ୍ରାଣ ଧରି ରହିଛି ଏହା ଆଶ୍ଚର୍ଯ୍ୟର କଥା । ନିଶ୍ଚୟ ମୋର ଜୀବନ ଅତି କଠୋର । ଏତିକି ମାତ୍ର ମୋର ପ୍ରାର୍ଥନା, ଯେପରି ମୁଁ ଅନ୍ତିମ କାଳରେ ତୁମ୍ଭର ପାଦତଳେ ସ୍ଥାନ ପାଏଁ ।”

ସୀତା ଦେବୀ ବିକଳ ଭାବରେ ଏହିପରି ବିଳାପ କଲେ । ବନଭୂମି ସୀତାଙ୍କ ଦୁଃଖରେ କାତର ହୋଇ ପ୍ରତିଧ୍ୱନି ଛଳରେ କ୍ରନ୍ଦନ କରିବାକୁ ଲାଗିଲା । ସୀତାଙ୍କ ଦୁଃଖ ଦେଖି ମୟୂରମାନେ ନୃତ୍ୟରୁ ବିରତ ହେଲେ । ମୃଗମାନେ ତୃଣ ଭକ୍ଷଣ କରି ପାରିଲେ ନାହିଁ । ବୃକ୍ଷମାନେ ଅଙ୍ଗରୁ ପୁଷ୍ପଭୂଷଣ ତ୍ୟାଗ କଲେ ।

ଏହି ସମୟରେ ମହର୍ଷି ବାଲ୍ମୀକି କୁଶ ସମିଧ ସଂଗ୍ରହ କରିବା ପାଇଁ ସେହି ବନଦେଶକୁ ଆସିଥିଲେ । ତାଙ୍କର ହୃଦୟ ଅତି କୋମଳ । ଏକଦା ଜଣେ ବ୍ୟାଧ କ୍ରୌଞ୍ଚ ଦମ୍ପତି ମଧ୍ୟରୁ ଗୋଟିକୁ ବିନାଶ କରିବାର ଦେଖି ତାଙ୍କର ଶୋକ ଶ୍ଲୋକ ଆକାରରେ ପ୍ରକାଶ ପାଇଥିଲା । ସେ ସୀତାଙ୍କର କ୍ରନ୍ଦନ ଧ୍ୱନି ଶୁଣିପାରି ଦୁଃଖିତ ହୃଦୟରେ ତାଙ୍କ ନିକଟରେ ଉପସ୍ଥିତ ହେଲେ । ରାହୁଗ୍ରସ୍ତ ଚନ୍ଦ୍ର ପରି ଏକାକିନୀ ସୀତାଦେବୀଙ୍କୁ ଦେଖି ସେ ଦୁଃଖରେ ତରଳି ଗଲେ । ସୀତା ଭକ୍ତି ସହକାରେ ତାଙ୍କର ପଦ ବନ୍ଦନା କଲେ । ବାଲ୍ମୀକି ସୀତାଙ୍କର ଗର୍ଭଲକ୍ଷଣ ଦେଖି ଆଶୀର୍ବାଦ କଲେ, 'ଯଶସ୍ୱୀ ବୀର ପୁତ୍ର ଲାଭ କର,' ସୀତାଙ୍କୁ ଆଶ୍ୱାସନା ଦେବାପାଇଁ ସେ କହିଲେ, "ସତୀ ଶିରୋମଣି ସୀତେ, ମୁଁ ଧ୍ୟାନବଳରେ ଜାଣି ପାରିଛି ଯେ ରାମଚନ୍ଦ୍ର ଲୋକାପବାଦ ହେତୁରୁ ତୋତେ ତ୍ୟାଗ କରିଅଛନ୍ତି । ତୋର

ଶ୍ୱଶୁର ଦଶରଥ ମୋର ବନ୍ଧୁ; ରାଜର୍ଷି ଜନକ ତୋର ପିତା । ତୁ ସ୍ୱର୍ଣ୍ଣ ସତୀମାନଙ୍କ ମଧ୍ୟରେ ଅଗ୍ରଗଣ୍ୟା । ତେଣୁ ତୋର ନିର୍ବାସନରେ ମୁଁ ଏକାନ୍ତ ଦୁଃଖିତ । ବତ୍ସେ, ତୁ ମୋର ଆଶ୍ରମନିକଟ ସ୍ୱଚ୍ଛନ୍ଦରେ ବାସ କର । ଆଶ୍ରମରେ ରହିଲେ ହୃଦୟର ବିକାର ବିନଷ୍ଟ ହୁଏ, ଶାନ୍ତି ଆସେ । ସେଠାରେ ଶ୍ୱାପଦ-ମାନେ ମଧ୍ୟ ନିଜର ହିଂସ୍ର ପ୍ରକୃତି ତ୍ୟାଗ କରି ଶାନ୍ତଭାବରେ ବାସ କରୁଅଛନ୍ତି । ସେଠାରେ ତୋର ସନ୍ତାନର ଯଥାବିଧି ଜାତକର୍ମ କରାଯିବ । ତମସାତୀର ଏହିପରି ପବିତ୍ର ଆଶ୍ରମମାନଙ୍କରେ ପୂର୍ଣ୍ଣ । ଏହି ନଦୀର ଜଳ ଅତି ପବିତ୍ର । ତୁ ସେଥିରେ ପ୍ରତ୍ୟହ ସ୍ନାନ କରି ତାର ସୈକତରେ ଦେବ-ପୂଜା ସମ୍ପାଦନ କରିବୁ । ହୃଦୟରୁ ଚିନ୍ତା ଦୂର କରି ଶାନ୍ତି ଉପଭୋଗ କର । ମୁନିକୁମାରୀମାନଙ୍କର ମଧୁର ବାକ୍ୟରେ ତୋର ଏ ଶୋକ ଦୂରୀଭୂତ ହୋଇଯିବ । ଘଟରେ ଜଳ ଆଣି ଆଶ୍ରମର ବୃକ୍ଷମାନଙ୍କୁ ବଢାଇ ତୁ ସନ୍ତାନ ମୁଖ ଦେଖିବା ଆଗରୁ ସନ୍ତାନ ପାଳନର ସୁଖ ଭୋଗ କରିବୁ ।”

ବୃଦ୍ଧ ତପସ୍ୱୀ ବାଲ୍ମୀକି ଏହିପରି ମଧୁର ବାକ୍ୟରେ ସୀତାଦେବୀଙ୍କୁ ଆଶ୍ୱାସନା ଦେଇ ସନ୍ଧ୍ୟାକାଳରେ ତପୋବନ ମଧ୍ୟକୁ ନେଇଗଲେ ।

**ଟିପ୍ପଣୀ**—କମ୍ପି ଉଠିଲେ ବସୁମତୀ ଜନନୀ ।

ପୃଥିବୀ ଜୀବଜଗତର ପାଳନକର୍ତ୍ତ୍ରୀ । ସେ ସୀତାଙ୍କର ଜନ୍ମଦାତ୍ରୀ ମାତା । ସ୍ୱୀୟ କନ୍ୟାର ଦୁଃଖରେ ସେ କମ୍ପି ଉଠିବା ସ୍ୱାଭାବିକ ।

ଦ୍ୱିପତ ବଂଶ........ପେଶିଲେ ପୁଣେ । [ପୃ ୧୪]

ରାମଚନ୍ଦ୍ରଙ୍କର ପୂର୍ବପୁରୁଷ ଭଗୀରଥ ତପସ୍ୟା ଦ୍ୱାରା ଗଙ୍ଗାଙ୍କୁ ମର୍ତ୍ତ୍ୟକୁ ଆଣି ଅଭିଶପ୍ତ ପିତୃପୁରୁଷଙ୍କୁ ଉଦ୍ଧାର କରାଇଥିଲେ । ତେଣୁ ଗଙ୍ଗାଙ୍କର ଅନ୍ୟ ନାମ ଭାଗୀରଥୀ । ସୀତାଦେବୀ ରାମଚନ୍ଦ୍ରଙ୍କର ପତ୍ନୀ । ଅତଏବ କୁଳବଧୂ ସୀତାଙ୍କର ଦୁଃଖ ଦୂର କରିବାକୁ ବ୍ୟାକୁଳ ହୋଇ ଭାଗୀରଥୀ ଜଳକଣାଯୁକ୍ତ ଶୀତଳ ପବନକୁ ତାଙ୍କ ନିକଟକୁ ପଠାଇଲେ । ଅର୍ଥାତ୍ ଗଙ୍ଗାଜଳକୁ ସ୍ପର୍ଶକରି ବହୁଥିବା ଶୀତଳ ପବନ ବାଜିବାରୁ ସୀତାଙ୍କର ମୂର୍ଚ୍ଛା ଦୂର ହେଲା ।

ଜୀମୂତ ଆବରଣେ.....ଅମ୍ବର [ପୃ ୯୪]

ରଘୁବଂଶ ସୂର୍ଯ୍ୟଙ୍କଠାରୁ ସମ୍ଭୂତ । ରଘୁକୁଳବଧୂ ସୀତାଙ୍କର ଦୁଃଖ ଦେଖି ସୂର୍ଯ୍ୟଦେବ ସହ୍ୟକରି ପାରିଲେ ନାହିଁ । ତେଣୁ ସେ ମେଘ ଆବରଣରେ ନିଜକୁ ଲୁଚାଇଦେଲେ ।

ଗହନ ବନେ.........ସର୍ବ ଅବନୀ (ପୃ ୯୭ ସ୍ଥା)

ଏକଦା ଗୋଟିଏ ବ୍ୟାଧ ବୃକ୍ଷରେ ବସିଥିବା କ୍ରୌଞ୍ଚ ଦମ୍ପତୀ ମଧ୍ୟରୁ ଗୋଟିକୁ ଶରଦ୍ୱାରା ବଧ କଲା । ବାଲ୍ମୀକି ଏହି କରୁଣ ଦୃଶ୍ୟ ଦେଖି ଶୋକରେ ଅଭିଭୂତ ହୋଇ କହିଲେ;—

ମା ନିଷାଦ ପ୍ରତିଷ୍ଠାଂ ତ୍ୱ ମଗମଃ ଶାଶ୍ୱତୀଃ ସମାଃ
ଯତ୍ କ୍ରୌଞ୍ଚ ମିଥୁନାଦେକ ମବଧୀଃ କାମ ମୋହିତଃ ।

ବାଲ୍ମୀକିଙ୍କର ଏହି ଶୋକୋକ୍ତି ଆଦି ଶ୍ଳୋକ ନାମରେ ଜଗତରେ ଖ୍ୟାତି ଲାଭ କରିଅଛି ।

## (୨୭) ଉତ୍କଳ ସନ୍ତାନ

### ( କବି ୰ ମଧୁସୂଦନ ଦାସ )

**କବି ପରିଚୟ**—ସ୍ୱର୍ଗତ ମଧୁସୂଦନ ଦାସ ଏମ୍, ଏ.; ବି.ଏଲ୍., ସି. ଆଇ, ଇ, 'ମଧୁବାବୁଙ୍କର' ନାମରେ ସମସ୍ତ ଓଡ଼ିଶାରେ ପରିଚିତ । ସେ ଓଡ଼ିଶାରୁ ସର୍ବ ପ୍ରଥମେ ଏମ୍. ଏ.; ବି. ଏଲ୍. ପାଶ କରିଥିଲେ । ସେ ପ୍ରଥମ ଓଡ଼ିଆ ମନ୍ତ୍ରୀ ଓ ମନ୍ତ୍ରିତ୍ୱ ତ୍ୟାଗ କରିବା ବିଷୟରେ ଭାରତୀୟଙ୍କ ମଧ୍ୟରେ ପ୍ରଥମ । ଓଡ଼ିଆଙ୍କ ମଧ୍ୟରେ ସେ ପ୍ରଥମେ ବିଲାତ ଯାଇଥିଲେ । ସେଥିଲାଗି ସେ ହିନ୍ଦୁ ସମାଜରୁ ବିତାଡ଼ିତ ହୋଇଥିଲେ । ସେ ଓଡ଼ିଆ ଜାତିର ଏକୀକରଣ ପାଇଁ ଉତ୍କଳ ସମ୍ମିଳନୀ ପ୍ରତିଷ୍ଠା କରି ଯାବଜ୍ଜୀବନ ଚେଷ୍ଟା କରିଥିଲେ । ଶିଳ୍ପ, ଶିକ୍ଷା, ରାଜନୀତି ପ୍ରଭୃତି ବିଭିନ୍ନ କ୍ଷେତ୍ରରେ ଓଡ଼ିଶାର ଉନ୍ନତି ଲାଗି ସେ ସତତ ଚେଷ୍ଟିତ ଥିଲେ । ମଧୁବାବୁଙ୍କର ଜୀବନ ଉତ୍କଳର ପ୍ରାୟ ଅର୍ଦ୍ଧଶତାବ୍ଦୀର ଜାତୀୟ ଇତିହାସ କହିଲେ ଚଳେ । ସେ ୧୮୪୮ ଖ୍ରୀଷ୍ଟାବ୍ଦରେ, କଟକ ଜିଲ୍ଲାର ସତ୍ୟଭାମାପୁରରେ ଜନ୍ମଗ୍ରହଣ କରି

୧୯୩୪ ଖ୍ରୀଷ୍ଟାବ୍ଦରେ କଟକରେ ସ୍ୱର୍ଗାରୋହଣ କରିଥିଲେ । ତାଙ୍କର କବିତାରେ ମାତୃଭୂମି ପ୍ରୀତି ତଥା ତତ୍କାଳୀନ ରାଜନୈତିକ ଆଦର୍ଶର ସୂଚନା ମିଳେ ।

**କଠିନ ଶବ୍ଦ**—ସନ୍ତାନ (ସମ୍+ତନ୍+ଅ)—ଅପତ୍ୟ,ପୁତ୍ର କନ୍ୟା· ବନ୍ଧୁ—ବାନ୍ଧବ, ଜନନୀ—(ଜନ୍+ଅନ୍, ସ୍ତ୍ରୀରେ ଈ)ମାତା,ରୋଦନ—(ରୁଦ୍+ଅନ)କ୍ରନ୍ଦନ,ଖ୍ୟାତି—(ଖ୍ୟା+ତି)ପ୍ରଶଂସା,ଔରସ—(ଉରଃ+ଅ) ସାହସୀ—(ସାହସ+ଅସ୍ତି ଅର୍ଥରେ ଇନ୍); କାପୁରୁଷ (କୁ ବା କୁତ୍ସିତ ପୁରୁଷ କ. ଧା)—ଭୀରୁ,ପ୍ରକୃତି—(ପ୍ର—କୃ+ତି) ସ୍ୱଭାବ,ଧ୍ୟାନ(ଧ୍ୟୈ+ଅନ)—ଚିନ୍ତା,କ୍ଷିପ୍ତ (କ୍ଷିପ୍+ତ)—ପାଗଳ,ଶ୍ୱାନ-କୁକୁର,ଭୃତ୍ୟ(ଭୃ+ଯ) ଚାକର, ଉନ୍ନତ—(ଉତ୍+ନମ୍+ତ); ଶୁଭ—ମଙ୍ଗଳ, ଚିକିତ୍ସକ (କିତ୍-ସନ୍—ଚିକିତ୍ସା+ଅକ)—ବୈଦ୍ୟ; ନନ୍ଦିଘୋଷ—ଜଗନ୍ନାଥଙ୍କ ରଥ, ଢୋବଡ଼ା—ବୁଠ, କୋଳଥ ଆଦି ଦାନାପୂର୍ଣ୍ଣ ଥଳି, ବନିତା—ସ୍ତ୍ରୀ; ପୁତ୍ର (ପୁତ୍—ତ୍ରୈ+ଅ)ପୁଅ;ବିପ୍ଲବ—(ବି—ପ୍ଲୁ+ଅ)ବିଦ୍ରୋହ,ଗୌରବ—(ଗୁରୁ+ଅ) ସମ୍ମାନ, ପ୍ରସବିନୀ—(ପ୍ର—ସୂ+ଣିନ୍, ସ୍ତ୍ରୀ—ଈ) ମାତା; ମନସ୍ତାପ—(ମନଃ—ତପ୍+ଅ)ମନୋଦୁଃଖ,ବିସ୍ମରଣ—(ବି—ସ୍ମୃ+ଅନ) ଭୁଲିଯିବା, ଆଶ୍ରୟ—(ଆ—ଶ୍ରି+ଅ) ଅବଲମ୍ବନ ।

**ପଦପରିବର୍ତ୍ତନ**—ବନ୍ଧୁ—ବନ୍ଧୁତା (ବି), ପ୍ରକୃତ (ବିଂ) ବିପ୍ଲବ—ବିପ୍ଳୁତ (ବିଂ), ଉନ୍ନତ—ଉନ୍ନତ (ବିଂ); ପ୍ରସବ—ପ୍ରସୂତ, (ବିଂ), ବିସ୍ମରଣ—ବିସ୍ମୃତ (ବିଂ) ଆଶ୍ରୟ—ଆଶ୍ରିତ (ବିଂ), ଖ୍ୟାତି, —ଖ୍ୟାତ (ବିଂ), କାପୁରୁଷ—କାପୁରୁଷତା (ବି) ।

**ଟିପ୍ପଣୀ**—ନନ୍ଦିଘୋଷ—ରଥଯାତ୍ରା ସମୟରେ ଜଗନ୍ନାଥ ମହାପ୍ରଭୁ ଯେଉଁ ରଥରେ ବିଜେ ହୁଅନ୍ତି ତାହାର ନାମ ନନ୍ଦିଘୋଷ ।

ଜାତିକୁ ଏଠାରେ ନନ୍ଦିଘୋଷ ରଥ ସହିତ ତୁଳନା କରାଯାଇଅଛି ।

**ସାରାଂଶ**—ମଧୁସୂଦନ ଏହି କବିତାରେ ଓଡ଼ିଆ ଜାତିକୁ ଉଦ୍‌ବୋଧନ କରି କହୁଅଛନ୍ତି:—

ହେ, ଓଡ଼ିଆ, ତୁ ଉତ୍କଳର ସନ୍ତାନ ହୋଇ ଏତେ ହୀନ ହେଲୁ କିପରି ? ଉତ୍କଳ ଜନନୀ ଦୁଃଖରେ କାନ୍ଦୁଅଛି । ତୁ ତାହା ପ୍ରକାଶ କରିବାକୁ ମଧ୍ୟ ଭୟ କରୁଛୁ କାହିଁକି ? ତୋର ପୂର୍ବପୁରୁଷମାନେ ସମରକ୍ଷେତ୍ରରେ ପ୍ରସିଦ୍ଧି ଲାଭ କରିଥିଲେ; ଅଥଚ ତୁ ରାଜକର୍ମଚାରୀମାନଙ୍କ ନିକଟରେ ତୋର ଦୁଃଖ ଜଣାଇବାକୁ ଭୟ କରୁଛୁ ? ତୋର ପୂର୍ବପୁରୁଷ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ସମଗ୍ର ରାଜ୍ୟ ଜୟ କରିଥିଲେ । ତୁ ତାଙ୍କରି ବଂଶରେ ଜାତ ହୋଇ କେଉଁ ଗୁଣରେ ତାଙ୍କ ସଙ୍ଗେ ସମାନ ? ଦେଖ ବ୍ରିଟେନର ଲୋକେ ସାହସୀ, ସେମାନେ ସାହସୀକୁ ଆଦର କରନ୍ତି । କାପୁରୁଷକୁ ଘୃଣା କରନ୍ତି । ଶିଖ ଓ ରାଜପୁତ ଜାତିମାନେ ସାହସୀ ବୋଲି ସମ୍ମାନ ପାଉଛନ୍ତି; ମାତ୍ର ଓଡ଼ିଆମାନେ ସେ ସମ୍ମାନରୁ ବଞ୍ଚିତ । ତୋଷାମଦ କରିବା ଦ୍ୱାରା କେବେହେଲେ ଜାତିର ସମ୍ମାନ ବଢ଼ିବ ନାହିଁ । ତୋଷାମଦ କରିବା କୁକୁରର ପ୍ରକୃତି । ମାତ୍ର ତୋଷାମଦର ଫଳ ସ୍ୱରୂପ ସେ ଅଇଁଠା ପତର ପାଇଥାଏ । ତୋଷାମଦିଆ ଲୋକ ପାଗଳ କୁକୁର ପରି । ତାକୁ ଚିହ୍ନିବା ସହଜ ନୁହେଁ । ପାଗଳ କୁକୁର ପ୍ରଭୁଭକ୍ତ ଦେଖାଇ ଗୋଡ଼ ଗୁଞ୍ଜି ଗୁଞ୍ଜି ହୋଇ ଭଣ୍ଡି କରିଦିଏ । ସେହିପରି ତୋଷାମଦିଆ ଲୋକ ବଡ଼ ବିପଜ୍ଜନକ । ତୋଷାମଦକାରୀମାନେ ସ୍ୱାର୍ଥ ସାଧନ ପାଇଁ ସରଳ ଲୋକଙ୍କର ସର୍ବନାଶ କରିଥାନ୍ତି । ସ୍ୱାର୍ଥ ସାଧିବାକୁ ଚେଷ୍ଟା କଲେ, କଦାପି ଜାତିର ଉନ୍ନତି ହୋଇ ନ ପାରେ । ଗୋଖରର ଗୋଡ଼ରେ ମାଂସ ବୃଦ୍ଧି ହେବା ଦେହ ପକ୍ଷରେ ଶୁଭ ଲକ୍ଷଣ ନୁହେଁ । ଯେଉଁ ଲୋକ ନିଜର ସ୍ୱାର୍ଥ ସାଧନରେ ବ୍ୟସ୍ତ ଥାଏ ସେ କେବେହେଲେ ଜାତିର ଉନ୍ନତି କରି ନ ପାରେ । ସ୍ୱାର୍ଥପର ଲୋକର ହସ୍ତରେ ଜାତୀୟ ଉନ୍ନତି ଭାର ନ୍ୟସ୍ତ କଲେ ଜାତିର ସର୍ବନାଶ ହେବ । ଘୋଡ଼ା ପାଟିରେ ଦାନାର ତୋବଡ଼ା ବନ୍ଧା ହୋଇଥିଲେ ସେ କେବଳ ଖାଇବାରେ ଲାଗେ । ଗାଡ଼ି ଟାଣିବା କଥା ଭୁଲିଯାଏ । ସେହିପରି ସ୍ୱାର୍ଥପର ଲୋକ ନିଜକଥା ଭାବୁ ଭାବୁ ଦେଶକଥା ଭୁଲିଯାଏ । ସ୍ୱାର୍ଥପର ଲୋକ ନେତୃତ୍ୱ ନେଲେ ଦେଶର ଉନ୍ନତି ଅସମ୍ଭବ । ସ୍ୱାର୍ଥ ସଙ୍ଗେ ସଙ୍ଗେ ତୋଷାମଦ ରହିଥାଏ । ତୋଷାମଦ ଓ ସ୍ୱାର୍ଥକୁ ଭୟ ଏବଂ

ଦ୍ୱାର ଉପୂକ୍ତ ହେବ । ଏ ସମସ୍ତଙ୍କର ମଙ୍ଗଳ ହେଲେ ରାଜ୍ୟରେ ଘୋର ବାଦ ଘଟିବା ସୂନିଶ୍ଚିତ ।

ପୂର୍ବ ଗୌରବ ଓ ପୂର୍ବ ସାହସ ମନେ ପକାଇ ଉତ୍କଳବାସୀ ଜାଗି ଉଠ । ଉତ୍କଳ ବୀରପୁତ୍ରର ଜନନୀ । ଏବେ ସେ ଘୋର ଅପମାନ ହେଉଅଛୁ । ତାର ସନ୍ତାନ ହୋଇ ତୁ କପରି ଜନସମାଜରେ ମୁହଁ ଦେଖାଉ ଅଛୁ । ତୋର ପୂର୍ବପୁରୁଷ ସ୍ୱର୍ଗପୁରରେ ରହି ଉତ୍କଳର ଏ ଦୁର୍ଦ୍ଦଶା ଦେଖି ମନସ୍ତାପ ହେଉଅଛନ୍ତି । ସେମାନଙ୍କ କଥା ଭୁଲିଯାଇ ତୁ ମହାପାପ କରୁଅଛୁ । ତୁ ତୋପାପମଦ ଓ ସ୍ୱାର୍ଥକୁ ଛାଡ଼ି ସଙ୍ଗେ ଅସ୍ତ୍ର ଗ୍ରହଣ କର । ତାହା ହେଲେ ଅଳ୍ପକାଳ ମଧ୍ୟରେ ବ୍ରିଟିଶ ସାମ୍ରାଜ୍ୟରେ ତୋର ମଙ୍ଗଳ ସାଧିତ ହେବ ।

---

# କ୍ଷମା

## ( କବି— ୬ ନନ୍ଦକିଶୋର ବଳ )

**କବି ପରିଚୟ—**କବି ନନ୍ଦକିଶୋର ଆଧୁନିକ ଯୁଗର ଜଣେ ଖ୍ୟାତିସମ୍ପନ୍ନ ଲେଖକ ଥିଲେ । ତାଙ୍କର ଜନ୍ମସ୍ଥାନ କଟକ ଜିଲ୍ଲାର କୃଷ୍ଣପୁର ଗ୍ରାମରେ । ସେ ବି. ଏ, ବି.ଟି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଶିକ୍ଷାବିଭାଗରେ କାର୍ଯ୍ୟ କରି ଆସିଷ୍ଟାଣ୍ଟ ଇନ୍‌ସ୍ପେକ୍ଟର ହୋଇଥିଲେ ଏବଂ ସରକାରଙ୍କଠାରୁ ରାୟସାହେବ ଉପାଧି ପାଇଥିଲେ । ସେ ପଲ୍ଲୀଚିତ୍ର, କର୍ଣ୍ଣଧାର, ସତ୍ୟ ବନବାସ, ଶର୍ମିଷ୍ଠା ପ୍ରଭୃତି କାବ୍ୟ ଓ କନକଲତା ନାମରେ ଗୋଟିଏ ଉପନ୍ୟାସ ରଚନା କରି ଯାଇଅଛନ୍ତି ।

**ଶବ୍ଦାର୍ଥ—**ତିରସ୍କାର (ତିରସ୍—କୃ+ଅ) ଗାଳି, ଅପମାନ, ଉପେକ୍ଷା (ଉପ—ଈକ୍ଷ୍+ଅ, ଅ-ସ୍ତ୍ରୀ)—ଅନାଦର, ବେଖାତିର,ଚରାଚର (ଚର+ଅଚର)—ସ୍ଥାବର,ଜଙ୍ଗମ;ଅଯୁତ(ଅ—ଯମ୍+ତ)—ବନ୍ଧ,ରଶ୍ମି, (ଉତ୍+ଯମ)—ଲଗାମ, ସେଚନ (ସିଚ୍+ଅନ)—ଛିଞ୍ଚିବା, (୧୧୨ ପୃଷ୍ଠା) କୁଳଜ

(ଭୁଜ—ଗମ୍+ଅ) ସର୍ପ, ନିର୍ମୋକ (ନିର୍—ମୁଚ୍+ଅ) ସାପର କାତି, ତିତିକ୍ଷା (ତିଜ୍—ସନ୍+ଅ, ସ୍ତ୍ରୀ ଆ) ତ୍ୟାଗ କରିବାର ଇଚ୍ଛା, ନାରକୀୟ (ନରକ+ସମ୍ବନ୍ଧାର୍ଥରେ ଈୟ), ଦିବ୍ୟ ଧାମକୁ—ସ୍ୱର୍ଗକୁ, ବାରିଦ—(ବାରି—ଦା+ଅ) ମେଘ, ଜୀବନ—ଜଳ, ବୈକୁଣ୍ଠ—ସ୍ୱର୍ଗ, ଭଣ୍ଡାଘର—ଭଣ୍ଡାର, କୈବଲ୍ୟ—(କେବଳ+ଭାବାର୍ଥରେ ଯ) ମୋକ୍ଷ, (୧୨୮ ପୃଷ୍ଠା] ପିପୀଲିକା—ପିମ୍ପୁଡ଼ି, ଇତର—ଅନ୍ୟ ।

**ସାରକଥା**—ଯେଉଁ ଲୋକ କ୍ଷମାଗୁଣରେ ଅନ୍ୟର ତିରସ୍କାରକୁ ଉପେକ୍ଷା କରିପାରେ, ସେ ଜଗତ ଜୟ କରିଥାଏ । ସାଧୁ ସମାଜରେ ନେତୃତ୍ୱ ନେବା ପାଇଁ କ୍ରୋଧକୁ ଜୟ କରିବା ଏକାନ୍ତ ଆବଶ୍ୟକ । କ୍ରୋଧ ବହ୍ନି ପରି । ସାଧୁଲୋକେ କ୍ଷମା ବାରି ସେଚନ କରି ସେ ବହ୍ନିକୁ ନିର୍ବାପିତ କରନ୍ତି । ଅନ୍ୟଲୋକେ ପାପକର୍ମ କଲେ ସେ ତାର ପାପଫଳ ଭୋଗ କରିବ । ସେଥିପାଇଁ କୋପାନ୍ୱିତ ହେବା କାହାରି ପକ୍ଷରେ ଉଚିତ ନୁହେଁ । ସାପ କାତି ଛାଡ଼ିଲା ପରି ଯେଉଁ ଲୋକ କ୍ରୋଧକୁ ତ୍ୟାଗ କରେ, ସେ ସମସ୍ତଙ୍କର ସମ୍ମାନର ପାତ୍ର ହୁଏ । ଶତ ଶତ ବର୍ଷ ଯଜ୍ଞ ବା ଦେବପୂଜା କରିବା ଦ୍ୱାରା ଯେଉଁ ଧର୍ମ ଅର୍ଜନ କରାଯାଏ, କ୍ରୋଧ ତ୍ୟାଗ କଲେ ସେହି ଧର୍ମର ଅର୍ଜନ ହୁଏ । ବଡ଼ ଲୋକମାନେ କ୍ରୋଧତ୍ୟାଗ କରି କ୍ଷମା ଓ ଧୈର୍ଯ୍ୟର ଆଶ୍ରୟ ନିଅନ୍ତି । ତିତିକ୍ଷା ସ୍ୱର୍ଗୀୟ ଗୁଣ, ମାତ୍ର କ୍ରୋଧ ନାରକୀୟ । ଯେ କ୍ଷମାଶୀଳ ସେ ଅସୀମ କ୍ଷମତାର ଅଧିକାରୀ ହୁଏ । ଯେ କ୍ଷମାକରେ ସେ ଯେପରି ଧନ୍ୟ, ଯେ କ୍ଷମାର ପାତ୍ର ସେ ମଧ୍ୟ ସେହିପରି ଧନ୍ୟ । ଆକାଶରୁ ବର୍ଷାଧାରା ପଡ଼ିଲେ ହୋଇ ପ୍ରାଣୀମାନଙ୍କର ମଙ୍ଗଳସାଧନ ସେହିପରି କ୍ଷମା ମୂର୍ତ୍ତିରୁ ଓ ଝରିଆସି ଲୋକଙ୍କ ଉପରେ ଅମୃତ ବର୍ଷଣ କରେ । କ୍ଷମାଦ୍ୱାରା ମନୁଷ୍ୟ ଦିବ୍ୟଗତି ଲାଭ କରେ । ମଣି ମାଣିକ୍ୟ ଖଚିତ ସିଂହାସନ ଓ ରାଜମୁକୁଟ ମୂଲ୍ୟବାନ୍ ସତ୍ୟ, ମାତ୍ର ରାଜାଙ୍କର ହୃଦୟସିଂହାସନରେ ଅଧିଷ୍ଠିତ କ୍ଷମା ଅମୂଲ୍ୟ । ରାଜଦଣ୍ଡ ଲୋକଙ୍କ ହୃଦୟରେ ଭୟ ଉପୁଜାଇ ଥାଏ, ମାତ୍ର କ୍ଷମା ସମସ୍ତଙ୍କ ହୃଦୟରେ ଭକ୍ତି ଉଦ୍ରେକ କରିଥାଏ । ଈଶ୍ୱର କ୍ଷମାମୟ, ସେ ଅସୀମ କ୍ଷମାବଳରେ ଜଗତ ପାଳନ କରୁଅଛନ୍ତି । ମନୁଷ୍ୟ

ସାଧାରଣତଃ ପାପକର୍ମ କରିଥାଏ । କେବଳ ନ୍ୟାୟ ବଳରେ ନର କଦାପି ମୁକ୍ତିର ଅଧିକାରୀ ହୋଇ ନ ପାରେ । ଈଶ୍ୱରଙ୍କର କ୍ଷମା ହିଁ ମନୁଷ୍ୟକୁ ମୁକ୍ତ କରିପାରେ ।

ରାଜଶକ୍ତି ପାର୍ଥିବ, ଏହି ଶକ୍ତି ସହିତ କ୍ଷମାଗୁଣ ମିଳିତ ହେଲେ, ଏହା ଦିବ୍ୟ ଶକ୍ତିର ଅନୁରୂପ ହୁଏ । ମାନବାତ୍ମା କେବଳ ସ୍ୱାମୀ କ୍ଷମାଦ୍ୱାରା ମୃତ୍ୟୁ ନଦୀକୁ ପାରହୋଇ ମୋକ୍ଷ ଲାଭ କରିପାରେ । ଦୋଷ ଅନୁସନ୍ଧାନ କରିବା ମହତ୍ ଲୋକର କାର୍ଯ୍ୟ ନୁହେଁ । ପ୍ରତିହିଂସା ପ୍ରବୃତ୍ତି ତ୍ୟାଗ କରି ହୃଦୟକୁ ନିର୍ମଳ କରିବା ଉଚିତ । ଯେ ଅନ୍ୟର ହୃଦୟରେ ଆଘାତ ଦିଏ ସେ ମହତ୍ ନୁହେଁ, ଯେ ଆଘାତକୁ ସହିପାରେ ସେ ମହତ୍ । ଯେ ଅସହିଷ୍ଣୁ ସେ କ୍ରୋଧରେ ଅଜ୍ଞାନ ହୁଏ । ତେଣୁ କ୍ଷମାଗୁଣ ଅବଲମ୍ବନ କରିବା ଉଚିତ ।

**ସରଳାର୍ଥ**—ନ୍ୟାୟେ ପାପିନର——ମୁକ୍ତିଦାନେ କ୍ଷମ ।

(କ) ମାନବ ମୋକ୍ଷ ଲାଭ କରିବାରେ ଇଚ୍ଛୁକ । ମାତ୍ର ସଂସାରରେ ପାପକାର୍ଯ୍ୟ କରି ସେ ମୋକ୍ଷପଦର ଅଧିକାରୀ ହୋଇ ନ ପାରି ପୁନର୍ଜନ୍ମ ଲାଭ କରୁଥାଏ । କେବଳ ନ୍ୟାୟ ବଳରେ କେହି ମୋକ୍ଷ ଆଶା କରି ନ ପାରେ ଭଗବାନ ମନୁଷ୍ୟକୁ ପାପରୁ କ୍ଷମାଦେଲେ ସେ ମୋକ୍ଷ ଲାଭ କରିପାରିବ ।

(ଖ) ଅପୂର୍ଣ୍ଣ ଏକାଙ୍କ——— କ୍ଷମା ବଳେ । ମନୁଷ୍ୟଠାରେ ଜୀବାତ୍ମା ଅଛି । ସେ ପରମାତ୍ମାଙ୍କର ଅଂଶ । ଜୀବାତ୍ମା ପରମାତ୍ମା ସହିତ ମିଳିବାକୁ ବ୍ୟାକୁଳ । ମାତ୍ର ପାପ ହେତୁରୁ ଜୀବାତ୍ମା ବାରମ୍ବାର ଜନ୍ମଗ୍ରହଣ କରି ପରମାତ୍ମା ସଙ୍ଗେ ମିଳିପାରୁ ନାହିଁ । ଭଗବାନ କ୍ଷମା ଦେଲେ ଜୀବର ମୁକ୍ତି ହେବ । ସେ ଆଉ ପୁନର୍ଜନ୍ମ କଷ୍ଟ ଭୋଗ କରିବ ନାହିଁ ।

(ଗ) ରାଜଦଣ୍ଡ———— ଈଶ୍ୱରବନ । ରାଜଦଣ୍ଡ ରାଜଶକ୍ତିର ପରିଚାୟକ । ଏହା ଶାସିତମାନଙ୍କ ହୃଦୟରେ ଭୟ ସଞ୍ଚାର କରିଥାଏ । ଭକ୍ତି ସଞ୍ଚାର କରି ନ ଥାଏ । ମାତ୍ର ରାଜାଙ୍କ ହୃଦୟରେ କ୍ଷମାଗୁଣ ନିହିତ

ଥିଲେ ସେ ପ୍ରଜାମାନଙ୍କର ଅନ୍ତର ପାପ ଦୂଷନ୍ତି । ଭଗବାନ କ୍ଷମାମୟ । ସେ ଦଣ୍ଡବଳରେ ଜଗତ ଶାସନ ନ କରି କ୍ଷମା ଗୁଣରେ ଶାସନ କରନ୍ତି ।

ଏହି କବିତାର ନିମ୍ନଲିଖିତ ଅଂଶ ସହିତ ସେକ୍ସପିଅରଙ୍କ ଦ୍ଵାରା Mercy ବିଷୟରେ ଲିଖିତ ଇଂରାଜୀ କବିତାର ତୁଳନା କରାଯାଇ ପାରେ ।

କ୍ଷମାର ଉତ୍କର୍ଷ: କ୍ଷମା ଦାତା ଦୁହେଁ ଏ ଭୁବନେ ହିତଂଦନ୍ତି ।

It is twice blesse'd, It blesseth him that gives and him that takes.

ଦୟାଧାମୁଁ ସୁଧା — — — — — — ସୁନିର୍ମଳ ଧାରେ ପ୍ରସର

It droppeth, as gentle rain from heaven upon the place beneath.

ନୃପ ହୃଦବେଦୀ — — — — — ଉମ୍ଲ ହେବେ

It is enthroned in the hearts of kings.

ରାଜଦଣ୍ଡ ଘନା — — — — ଉଜ୍ଜ୍ୱଳ କାରଣ

His sceptre shows the force of temporal power, The attribute to awe and majesty;
Wherein doth sit the dread and fear of kings;
But mercy is above this sceptred away,

ନ୍ୟାୟ ପାପୀନିର — — — — — — ଦାନେ କ୍ଷମ

In the course of Justice none of us should see salvation. We do pray for mercy.

ପାର୍ଥିବ ଶକତି — — — — — — ଦେବାଂଶ ସମ

And earthly power doth then show likest God's when mercy seasons justice.

---

# (୩୧) ଆବାହନ

## (୰ କୁନ୍ତଳାକୁମାରୀ ସାବତ)

**କବି ପରିଚୟ**—କୁନ୍ତଳାକୁମାରୀ ଓଡ଼ିଆ ଖ୍ରୀଷ୍ଟିଆନ ଘରର ଝିଅ। ସେ କେତେକ ବର୍ଷ ବ୍ରହ୍ମଦେଶରେ କଟାଇଥିଲେ। କଟକ ମେଡ଼ିକାଲ ସ୍କୁଲରୁ ଏଲ୍, ଏମ୍, ପି ପାଶ୍ କରି ସେ ଦିଲ୍ଲୀରେ ଡାକ୍ତରି କରୁଥିଲେ। ଡାକ୍ତର କୃଷ୍ଣପ୍ରସାଦ ବ୍ରହ୍ମଚାରୀଙ୍କ ସହିତ ତାଙ୍କର ବିବାହ ହୋଇଥିଲା। ସେ ହିନ୍ଦୀ ଓ ଓଡ଼ିଆ ଉଭୟ ଭାଷାରେ ଅନେକ କାବ୍ୟ ଓ ଉପନ୍ୟାସ ଲେଖି ଯାଇଅଛନ୍ତି। ଓଡ଼ିଶାର ନାରୀକବିମାନଙ୍କ ମଧ୍ୟରେ କୁନ୍ତଳାକୁମାରୀଙ୍କର ସ୍ଥାନ ଅତି ଉଚ୍ଚ। ଅଞ୍ଜଳି, କାଳିବୋହୂ, ସ୍ଫୁଲିଙ୍ଗ, ପରଶମଣି, ପ୍ରେମଚିନ୍ତାମଣି ପ୍ରଭୃତି ତାଙ୍କର ଲେଖା। 'ଆବାହନ' କବିତାଟି ତାଙ୍କରି ଅଞ୍ଜଳିରୁ ଗୃହୀତ। ଏଥିରେ ନାରୀକବିଙ୍କର ଜାତୀୟ ଭାଷା ଓ ଜାତୀୟ ସାହିତ୍ୟ ପ୍ରତି ପ୍ରୀତି, ଭକ୍ତି ଓ ଅନୁରକ୍ତି ପ୍ରକଟିତ ହୋଇଅଛି।

**ଶବ୍ଦାର୍ଥ**—(ପୃ ୧୧୫ ସ୍ତ୍ୱା) ସତତ—ସର୍ବଦା; ମୁଦେ—ଆନନ୍ଦରେ; ସୁଲଳିତ—ଅତି ମଧୁର; ଭାରତୀ—ବିଦ୍ୟାର ଦେବୀ ଭାଷା ଓ ସାହିତ୍ୟର ଅଧିଷ୍ଠାତ୍ରୀ ଦେବୀ; ବୀଣାତନ୍ତ୍ରୀ—ବୀଣାର ତାର; ତାନ—ସ୍ୱନ; ନିଃସ୍ୱନ—ଧ୍ୱନି, ଶବ୍ଦ; ସନମାନେ—ସମ୍ମାନ ସହକାରେ; (ପୃ ୧୧୬ ସ୍ତ୍ୱା) ପୂତା (ପୂ+ତ) ପବିତ୍ର; ସୁମନ—ପୁଷ୍ପ; ବିଧୁର—ଶୋକାକୁଳ; ରମ୍ୟ—ସୁନ୍ଦର; ଅନୁଗତ—ଶରଣାଗତ; ମନ୍ମୁଖ (ମା+ଉଖ) ଦୀପ୍ତି, ତେଜ; ଚରଣରାଜୀବ—ପାଦପଦ୍ମ; ରସନା—ଜିହ୍ୱା; ନୀରସ (ନିଃ+ରସ) ରସହୀନ; ଶୁଷ—ଶୁଷ୍କ; ଲିପ୍ସା ଫଳ ଦ୍ୱନ୍ଦ୍ୱ—ଭଗା ଦୂପକ ପୁଷ୍ପ ସମ୍ବନ୍ଧ ମଧ୍ୟରେ; ଶ୍ରୀପଦ ନଳିନ—ସୁନ୍ଦର ପାଦ ପଦ୍ମ; (ପୃ ୧୧୭ ସ୍ତ୍ୱା) ବରେଣ୍ୟ—ପ୍ରଶଂସନୀୟ; ଅସଙ୍ଗତ—ଅସାମଞ୍ଜସ୍ୟ।

**ସାରକଥା**—ହେ ଦୟାମୟ ପ୍ରଭୁ, ମୋତେ କୃପା କର, ଯେପରିକି ମୁଁ ତୁମର ପବିତ୍ର, ସୁନ୍ଦର, ମଧୁର ନାମକୁ ଆନନ୍ଦରେ ସର୍ବଦା

ଗାନ କରେଁ । ଉତ୍କଳ ଈଶ୍ୱରଙ୍କ ବୀଣାତନ୍ତ୍ର ତାନରେ ମୁଁ ଯେପରି ସମସ୍ତଙ୍କ ହୃଦୟକୁ ତୋଷ କରେଁ, କବିତା ପୁଷ୍ପ ତୋଳି ଉତ୍କଳେଶ୍ୱରଙ୍କ ପାଦପଦ୍ମରେ ପୁଷ୍ପାଞ୍ଜଳି ଦେବାକୁ ଇଚ୍ଛା କରେ । ସେ ଉପହାର ନଗଣ୍ୟ ହେଲେହେଁ ଶ୍ରଦ୍ଧା ସହକାରେ ଦତ୍ତ ହେବାରୁ ହେୟ ନୁହେଁ । ମୋ କବିତାରେ କରୁଣ ହୃଦୟର ଉଚ୍ଛ୍ୱାସ ଆମ୍ଭ ପ୍ରକାଶ କରୁ । ଉତ୍କଳ ଭାଷାରେ ଦୟାମୟ ପରମେଶ୍ୱରଙ୍କର ଯଶୋଗାନ ପ୍ରକାଶ ପାଇ ଜଗତକୁ ମୁଗ୍ଧ କରୁ, ସମସ୍ତଙ୍କର ହୃଦୟ କନ୍ଦରକୁ ସ୍ପର୍ଶ କରୁ । ବିଧାତାଙ୍କର ଧର୍ମାଲୋକ ଉତ୍କଳୀୟ ଭାଷାରେ ସର୍ବତ୍ର ଉଜ୍ଜ୍ୱଳ ଆଲୋକ ବିସ୍ତାର କରୁ । ତାହା ଫଳରେ ଲୋକେ ଦୁଃଖ ଦୈନ୍ୟ ଭୁଲିଯାଇ ହୃଦୟର ଉଦାରତା ସାଧନ କରନ୍ତୁ ।

ମୁଁ ଜଗଦୀଶ୍ୱରଙ୍କ ପାଦପଦ୍ମକୁ କବିତା ପୁଷ୍ପାଞ୍ଜଳିରେ ସେବା କରିବି । ସେ ମୋ ପକ୍ଷରେ ଅତି କ୍ଷୁଦ୍ର ନୁହେଁ । ମୋର ଭାଷା ମୋ ପକ୍ଷରେ ଅତି ମୂଲ୍ୟବାନ । ଅନ୍ୟ କେହି ତାକୁ ହୀନ ମନେ କରି ପାରେ । ମୋର ଜିହ୍ୱା ପ୍ରଥମେ ଯେଉଁ ଭାଷା ଉଚ୍ଚାରଣ କରିଥିଲା, ସେ ଅନ୍ୟ ନିକଟରେ ତୁଚ୍ଛ ନୀରସ ହେଲେହେଁ ମୋ ପକ୍ଷରେ ସରସ । ଭାଷା ପୁଷ୍ପମାନଙ୍କ ମଧ୍ୟରେ ସେ ମନ୍ଦାର ପଦ୍ମ ଶ୍ରେଷ୍ଠ ।

ଯେପରି ମାତୃଭାଷା ସାହାଯ୍ୟରେ ତୁମ୍ଭର ପାଦପଦ୍ମକୁ ସେବା କରିବି ମୋତେ ଶିକ୍ଷା ଦିଅ, ସେଥିପାଇଁ ମୋର ସକଳ ଜ୍ଞାନ, ବୁଦ୍ଧି, ବିଦ୍ୟା, ଭକ୍ତି ବିନିଯୋଗ କରିବାକୁ ପ୍ରସ୍ତୁତ । ମୋର ସେହି ମାତୃଭାଷା ଉପରେ ଭଗବାନଙ୍କର ଆଶୀର୍ବାଦ ବର୍ଷୁ । ସେ ମୋର ଚିର ଆଦରଣୀୟ, ଚିର ସୁନ୍ଦର ଭାଷା । ଦେଶ ବିଦେଶରେ ଶତ ଶତ ଭାଷା ଥିଲେହେଁ ଉତ୍କଳୀୟ ଭାଷାହିଁ ମୋର ପରମଧନ ।

ହେ ମୋର ପରମ ପିତା, ମୁଁ ତୁମ୍ଭର ସନ୍ତାନ, ମୋର ଉପହାର ଯେତେ ତୁଚ୍ଛ ହେଲେହେଁ ତୁମ୍ଭର ଅନନ୍ତ ଦୟାମାତ୍ରେ ତାହା ଗ୍ରହଣ କର ।

ମୋର କବିତାରେ ଶତଶତ ଦୋଷ ଥିଲେହେଁ ତାକୁ କ୍ଷମା କର ଓ ଅନ୍ତିମ କାଳରେ ଏ ଅଧମକୁ ତୁମ୍ଭର ପାଦପଦ୍ମରେ ସ୍ଥାନ ଦିଅ ।

---

## (୩୬) ମା

### (୰ କୁନ୍ତଳାକୁମାରୀ ସାବତ)

**କବିପରିଚୟ**—କୁନ୍ତଳାକୁମାରୀ ଓଡ଼ିଆ ଖ୍ରୀଷ୍ଟିଆନ ଘରର ଝିଅ । ସେ କେତେବର୍ଷ ବର୍ମାରେ କଟାଇଥିଲେ । କଟକ ମେଡ଼ିକାଲ ସ୍କୁଲରୁ ଏଲ୍, ଏମ୍, ପି ପାଶ୍ କରି ସେ ଦିଲ୍ଲୀରେ ଡାକ୍ତରି କରୁଥିଲେ । ଡାକ୍ତର କୃଷ୍ଣପ୍ରସାଦ ବ୍ରହ୍ମଚାରୀଙ୍କ ସହିତ ତାଙ୍କର ବିବାହ ହୋଇଥିଲା । ସେ ହିନ୍ଦି ଓ ଓଡ଼ିଆ ଉଭୟ ଭାଷାରେ ଅନେକ କାବ୍ୟ ଓ ଉପନ୍ୟାସ ଲେଖି-ଯାଇଛନ୍ତି । ଓଡ଼ିଶାର ନାରୀକବିମାନଙ୍କ ମଧ୍ୟରେ କୁନ୍ତଳାକୁମାରୀ ଅତି ଉଚ୍ଚସ୍ଥାନ ଅଧିକାର କରିଥିଲେ । ଅଞ୍ଜଳି, କାଲହୋହ, ସ୍ଫୁଲିଙ୍ଗ, ଉଚ୍ଛ୍ୱାସ ପରଶମଣି ପ୍ରେମଚିନ୍ତାମଣି ପ୍ରଭୃତି ତାଙ୍କର ଲେଖା ।

**କଠିନ ଶବ୍ଦ**—ମହିମା(ମହତ୍+ଇମନ୍)ଗୌରବ, ଶକ୍ତ (ଶକ୍+ତ) ବଳ, ସୃତ (ସୃ+ତ) କମ୍ପମାନ—(କମ୍ପ+ଶାନଚ୍), ଗରିମା—ଗୁରୁ+ଇମନ) ବଡ଼ପଣ, ଅଚଳ (ନ—ଚଳ) ପର୍ବତ, ଶତାବ୍ଦୀ (ଶତ ଅବ୍ଦର ସମାହାର,ଦ୍ୱିଗୁ),କାହ୍ନେବର୍ଣ୍ଣ ପବନ(ପୂ+ଇନ)ପୁଣ୍ୟମୟ,କଲ୍ଲୋଳ-ଲହରୀ ବ୍ୟୋମ-ଆକାଶ, ସ୍ତୁତ (ସ୍ତୁ+ତ) ସ୍ତବ, ନିରୋଳ (ନାହିଁ ରୋଳ ଯହିଁରେ) ନିଃଶବ୍ଦ, ନିକ୍କଣ-ଧ୍ୱନି, ଦୁହିତା (ଦୁହ+ତୃ) କନ୍ୟା, ମୋହିତ (ମୁହ—ଣିଚ+ତ);ପାବନୀ (ପୂ+ଅନ, ସ୍ତ୍ରୀ—ଈ) ପବିତ୍ରକାରିଣୀ,ବଲ୍ଲୀ—ଲତା; ମନୋଜ୍ଞ—(ମନଃ—ଜ୍ଞା+ଅ) ମନୋହର, କଧୌତ-ସ୍ୱର୍ଣ୍ଣ, ମୃଣାଳିନୀ—ପଦ୍ମଲତା; ହେରି-ଦେଖି, ଅଧୋଗତ (ଅଧଃ ଗମ୍+ତ) ଅବନତ, ବ୍ୟଥିତ (ବ୍ୟଥ+ତ) ପୀଡ଼ିତ, ଆର୍ତ୍ତ (ଋ+ତ) ଦୁଃଖୀ, ଆର୍ଯ୍ୟ (ଋ+ଯ) ।

**ସମାସ**—କାବ୍ୟକଳା ଶିଳ୍ପ ଲୀଳାବିଳାସିନୀ— କାବ୍ୟ ଓ କଳା ଶିଳ୍ପର ଲୀଳାରେ ବିଳାସ କରେ ଯେ (ଦ୍ୱନ୍ଦ୍ୱ, କର୍ମଧା, ଷଷ୍ଠୀତତ୍) ନିଖିଳ ଅବନୀ ଜ୍ଞାନପ୍ରଦାୟିନୀ, ନିଖିଳ ଅଟେ ଅବନୀ— (କର୍ମଧାରୟ) ନିଖିଳ ଅବନୀର ଜ୍ଞାନ ପ୍ରଦାୟିନୀ (ଷଷ୍ଠୀତତ୍); କୋଟି କୁଞ୍ଜବନ କୁସୁମ ମାଳିନୀ । କୁଞ୍ଜ ନିର୍ମିତ ବନ (ମଧ୍ୟପଦଲୋପୀ କର୍ମଧାରୟ) କୋଟି କୁଞ୍ଜବନ (କର୍ମଧା) କୁଞ୍ଜବନର କୁସୁମ—କୋଟି କୁଞ୍ଜବନ କୁସୁମ, କୋଟି କୁଞ୍ଜବନ କୁସୁମର ମାଳା ଅଛି ଯାହାର (ସ୍ତ୍ରୀ) କୋଟି କୁଞ୍ଜବନ କୁସୁମ ମାଳିନୀ (ବହୁବ୍ରୀହି) ।

କୋଟି କଳ୍ପତରୁ ବଲ୍ଲୀ ରସାଳିନୀ—କଳ୍ପ ନାମକ ତରୁ (ମଧ୍ୟପଦଲୋପୀ କର୍ମଧାରୟ) କଳ୍ପତରୁର ବଲ୍ଲୀ (ଷଷ୍ଠୀ ତତ୍), କୋଟି କଳ୍ପତରୁ ବଲ୍ଲୀ (କର୍ମଧାରୟ), କୋଟି କଳ୍ପତରୁ ବଲ୍ଲୀ ଦ୍ୱାରା ରସାଳିନୀ (ତୃତୀୟା ତତ୍) ମନୋଜ୍ଞମାନସହେମମୃଣାଳିନୀ, ମନୋଜ୍ଞ ଅଟେ ମାନସ, ମନୋଜ୍ଞମାନସ (କର୍ମଧାରୟ) ହେମମୟ ମୃଣାଳିନୀ (ମଧ୍ୟପଦଲୋପୀ କର୍ମଧାରୟ) ମନୋଜ୍ଞ ମାନସର ହେମମୃଣାଳିନୀ (ଷଷ୍ଠୀତତ୍), ତ୍ରିଲୋକ ପାବନୀ ତ୍ରି ଲୋକର ସମାହାର (ଦ୍ୱିଗୁ), ତ୍ରିଲୋକର ପାବନୀ (ଷଷ୍ଠୀତତ୍) ।

**ସାରକଥା**—ଭାରତମାତାର ତେତିଶ କୋଟି ସନ୍ତାନ ଆଜି ଏକ ସ୍ୱରରେ ମାଆ ବୋଲି ଡାକି ଉଠନ୍ତୁ । ମାଆ ନାମର ମହିମାରେ ଦୁର୍ବଳ ହତ ଭାରତବାସୀମାନେ ଶକ୍ତିମାନ୍ ହୋଇ ଉଠନ୍ତୁ । ମା ନାମର ଗରିମାରେ ହିମାଳୟରେ ଶତ ଶତାବ୍ଦୀରେ ତୁଷାର ଉଜ୍ଜ୍ୱଳ ହେଉଅଛି । ଭାରତର ସିନ୍ଧୁ ଓ ଗଙ୍ଗାନଦୀର ପ୍ରବାହ ମାତୃସ୍ନେହର ନିର୍ଝର ରୂପେ ପ୍ରବାହିତ । ବ୍ରହ୍ମପୁତ୍ରର ପବିତ୍ର ଲହରୀ ରୂପେ ତାହା ବହିଯାଉଅଛି । ଭାରତର ମହାଗୀତ ଜଳରେ, ସ୍ଥଳରେ ଓ ଆକାଶରେ ଧ୍ୱନିତ ହେଉଅଛି । ସହ୍ୟାଦ୍ରି, ନୀଳଗିରି, ବିନ୍ଧ୍ୟ ପ୍ରଭୃତି ପର୍ବତରେ ବା ଗୋଦାବରୀ ପ୍ରଭୃତି ନଦୀରେ, ବୃନ୍ଦାବନର ଚନ୍ଦନ ବନରେ, ବଦ୍ରୀନାରାୟଣରେ ସର୍ବତ୍ର ମାଆଙ୍କ ନାମ କୀର୍ତ୍ତିତ ହେଉଅଛି । ପ୍ରତ୍ୟେକ ଭାରତବାସୀର ହୃଦୟ ଯନ୍ତ୍ରରେ ମାଆ ନାମର ପବିତ୍ର ମନ୍ତ୍ର ମଧୁର ସ୍ୱରରେ ବାଜି ଉଠୁଅଛି । ଏପରି ସ୍ଥାନ ନାହିଁ,

ଯାହାର ହୃଦୟରେ ଭାରତମାତାଙ୍କ ପ୍ରତି ଭକ୍ତି ନାହିଁ । କେଉଁ କନ୍ୟା ଭାରତମାତାର ନାମ ଶ୍ରବଣ କରି ଧନ୍ୟ ନ ହୁଏ । ଏପରି କିଏ କୁଳାଙ୍ଗାର ଅଛି ମା ନାମ ଶ୍ରବଣ କରି ଯାହାର ନେତ୍ରରୁ ଅଶ୍ରୁଧାରା ପ୍ରବାହିତ ନ ହୁଏ । ଆମର ଏହି ଭାରତମାତା ତ୍ରିଲୋକର ପବିତ୍ର କାରିଣୀ । ଗାୟତ୍ରୀ, ସାବିତ୍ରୀ ଏହି ଭାରତ ଭୂମିରେ ଜନ୍ମଗ୍ରହଣ କରିଥିଲେ, ଏହି ଭାରତରେ ବେଦ ବେଦାନ୍ତର ଉତ୍ପତ୍ତି, ଏହି ଭାରତ ନିଖିଳ ଜଗତକୁ ଜ୍ଞାନ ପ୍ରଦାନ କରିଅଛି । ଏହି ଭାରତରେ କଳାଶିଳ୍ପ ପ୍ରଭୃତିର ଉତ୍କର୍ଷ ପ୍ରକଟିତ ହୋଇଅଛି । କୋଟି କୋଟି କୁଞ୍ଜବନର କୁସୁମଦ୍ୱାରା ଭାରତ ଭୂମି ପରିଶୋଭିତା, ଏହା ବିବିଧ ତରୁଲତା ଦ୍ୱାରା ମଣ୍ଡିତ । ଆମର ମାତୃଭୂମି ଏହି ଭାରତବର୍ଷରେହିଁ ଜ୍ଞାନ ବିଜ୍ଞାନ ସର୍ବ ପ୍ରଥମେ ବିକଶିତ ହୋଇଥିଲା । ଏହିଠାରେହିଁ ପବିତ୍ର ଓଁକାର ଧ୍ୱନିର ଝଙ୍କାର ଉଠିଥିଲା । ଯେଉଁବେଳେ ସମଗ୍ର ପୃଥିବୀ ଅଜ୍ଞାନାନ୍ଧକାରରେ ଆଚ୍ଛନ୍ନ ଥିଲା ସେତେବେଳେ କେବଳ ଏହି ଭାରତ ବିଦ୍ୟାଧର୍ମର ଜ୍ୟୋତିରେ ଦେଦୀପ୍ୟମାନ ହେଉଥିଲା । ଆଜି ସେହି ଭାରତ ଭୂମିର ମ୍ଳାନ ହୀନ ଦଶା ଦେଖି କାହାର ବକ୍ଷ ବିଦୀର୍ଣ୍ଣ ନ ହେବ । ଭାରତବାସୀର ଧମନୀରେ ଆଜି କିଆଁ ଉଷ୍ଣ ରକ୍ତ ପ୍ରବାହିତ ହେଉନାହିଁ ? ମାତାର ଦୁଃଖ ଦେଖି ସେ କିଆଁ ବ୍ୟଥା ଅନୁଭବ କରୁନାହିଁ । ଆଜି ଭାରତବାସୀର ରନ୍ଧ୍ରରୁ ଆତ୍ମତେଜ ଲୁପ୍ତ ହୋଇନାହିଁ । ତେଣୁ ହେ ଭାଇମାନେ, ଜାଗି ଉଠ । ଭାରତମାତାର ତେତିଶ କୋଟି ସନ୍ତାନ ମାତାର ସ୍ତବ ଗାନ କରି ମାତୃ ନାମରେ ଜାଗ୍ରତ ହୁଅ ।

**ଟିପ୍ପଣୀ**—ଗାୟତ୍ରୀ (ଗାୟତ୍-ତ୍ରୈ+ଅ+ସ୍ତ୍ରୀ ଈ) ପ୍ରସିଦ୍ଧ ମନ୍ତ୍ର ବିଶେଷ । ଏହାର ଅନ୍ୟନାମ ସାବିତ୍ରୀ ମନ୍ତ୍ର ।

ସାବିତ୍ରୀ (ସବିତୃ+ଅ+ସ୍ତ୍ରୀ ଈ) ବେଦମାତା, ଗାୟତ୍ରୀମନ୍ତ୍ରାଧିଷ୍ଠାତ୍ରୀ ଦେବୀ । ସାବିତ୍ରୀ ବେଦମାନଙ୍କର ଜନନୀ ବୋଲି କୁହାଯାଏ ।

ଓଁକାର—ପ୍ରଣବ, ଓଁ ଅକ୍ଷର ଏହି ଧ୍ୱନି ସକଳ ପ୍ରକାର ମନ୍ତ୍ରର ଆଦ୍ୟରେ ଉଚ୍ଚାରିତ ହୁଏ । ଅ, ଉ, ମ ଏହି ତିନୋଟି ଅକ୍ଷରର ସଂଯୋଗରେ ଏହାର ଉତ୍ପତ୍ତି । ଅ—ବିଷ୍ଣୁ, ଉ—ଶିବ ଓ ମ—ବ୍ରହ୍ମା ।

ବେଦ.–[ବିଦ୍ + ଅ]; ବ୍ରହ୍ମାଙ୍କ ମୁଖରୁ ନିଃସୃତ ହିନ୍ଦୁମାନଙ୍କ ଧର୍ମ ଶାସ୍ତ୍ର ବେଦର ସଂଖ୍ୟା ଚାରି । ଯଥା ଋକ; ଯଜୁଃ, ସାମ, ଅଥର୍ବ । ବେଦ ହିନ୍ଦୁ-ମାନଙ୍କର ପ୍ରଧାନ ଧର୍ମଗ୍ରନ୍ଥ ।

ବେଦାନ୍ତ – ବ୍ୟାସଦେବଙ୍କର ପ୍ରଣୀତ ଦର୍ଶନ ଶାସ୍ତ୍ର । ଏହା ଶାସ୍ତ୍ରରେ ବ୍ରହ୍ମର ସ୍ୱରୂପ ନିରୂପଣ କରାଯାଇଅଛି ।

---

## (୩୩) ବନ୍ଦୀର ସ୍ୱଦେଶ ଚିନ୍ତା

### [ କବି—୰ଉତ୍କଳମଣି ଗୋପବନ୍ଧୁ ଦାଶ ]

**କବି ପରିଚୟ**—ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଓଡ଼ିଶାର ଘରେ ଘରେ ପରିଚିତ । ସେ ୧୮୭୭ ଖ୍ରୀଷ୍ଟାବ୍ଦରେ ପୁରୀ ଜିଲ୍ଲାର ସୁଆଣ୍ଡୋ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ସେ କଟକ କଲେଜରୁ ବି. ଏ. ଓ କଲିକତାରୁ ବି. ଏଲ୍. ପାଶ୍ କରିଥିଲେ । ସେ ଦେଶ ସେବାକୁ ନିଜର ବ୍ରତ ରୂପେ ଗ୍ରହଣ କରିଥିଲେ । ଲୋକମାନଙ୍କର ଶିକ୍ଷାର ପ୍ରସାର ପାଇଁ ସେ ସତ୍ୟବାଦୀଠାରେ ଗୋଟିଏ ହାଇସ୍କୁଲ ବସାଇଥିଲେ ଏବଂ ସମାଜ ନାମକ ସମ୍ବାଦ ପତ୍ର ଚଳାଇଥିଲେ । 'ସମାଜ' ଦୈନିକ ସମ୍ବାଦପତ୍ର ଏବେ ମଧ୍ୟ ରହିଛି । ଗୋପବନ୍ଧୁ କଂଗ୍ରେସ ଆନ୍ଦୋଳନରେ ଯୋଗଦେବା ପରେ ସତ୍ୟବାଦୀ ହାଇସ୍କୁଲ ଜାତୀୟ ବିଦ୍ୟାଳୟ ରୂପେ ପରିଣତ ହୋଇଥିଲା । ଜାତୀୟ ବିଦ୍ୟାଳୟ ଭାଙ୍ଗି ଯିବା ପରେ ସେଠାରେ ଗୋଟିଏ ନୂତନ ହାଇସ୍କୁଲ ବସିଅଛି । ସେ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାର ସଭ୍ୟ ଥାଇ ଓଡ଼ିଶା ପାଇଁ ଅନେକ କାମ କରିଥିଲେ । ସେ ପଞ୍ଜାବର ଲୋକସେବକ ସମାଜର ଜଣେ ବିଶିଷ୍ଟ ସଭ୍ୟ ଥିଲେ । ଓଡ଼ିଶାର ବନ୍ୟା ମରୁଡ଼ି ପ୍ରପୀଡ଼ିତ ଲୋକଙ୍କ ସେବାରେ ତାଙ୍କର ଜୀବନ କଟିଥିଲା । ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ସେ ଏକାଧିକବାର ଜେଲ ଯାଇଥିଲେ । ଜେଲରେ ଥିବା

ଅବସ୍ଥାରେ ସେ କେତେଗୁଡ଼ିଏ କବିତା ଲେଖିଥିଲେ । ଧର୍ମପଦ, ନଚିକେତା ଉପାଖ୍ୟାନ, ଗୋମାହାତ୍ମ୍ୟ ପ୍ରଭୃତି ତାଙ୍କର ରଚନା । ତାଙ୍କର କବିତା ସରଳ ମଧୁର ଓ ଭାବଗର୍ଭକ । ସେ ସର୍ବଦା ଦେଶ କାର୍ଯ୍ୟରେ ଲିପ୍ତ ରହୁ-ଥିବାରୁ ତାଙ୍କର କବି ପ୍ରତିଭା ଯଥେଷ୍ଟ ପରିମାଣରେ ବିକଶିତ ହେବାର ସୁଯୋଗ ପାଇ ନ ଥିଲା । ସେ ୧୯୨୮ ମସିହା ଜୁନ ମାସରେ ସ୍ୱର୍ଗାରୋହଣ କରିଥିଲେ ।

**ଶବ୍ଦାର୍ଥ**—ବନ୍ଦୀ—(ବନ୍ଦ୍ + ଇନ), ସୁଶୀତଳ (ସୁଶୀତଳ, କର୍ମଧା), ମୃଦୁ (ମୃଦ୍ + ଉ) ମନ୍ଦ, ମରୁତ (ମୃ + ଉତ) ପବନ, ବୃନ୍ତ—ଡେମ୍ଫ, ଚର ଚର [ଚର୍ + ଅ], ବହନ—ଶୀଘ୍ର, ସ୍ନିଗ୍ଧ [ସ୍ନିହ୍ + ତ] କୋମଳ, ପଲକ—ମୁହୂର୍ତ୍ତ, ଅର୍ଚ୍ଚନା [ଅର୍ଚ୍ଚ + ଅନ, ସ୍ତ୍ରୀ ଆ] ପୂଜା, ସମ୍ଭାଷ (ସମ—ଭାଷ୍ ଅ) କଥୋପକଥନ, କାରାଗାର (କର + ଅଗାର) ବନ୍ଦୀଶାଳା, କକ୍ଷ—କୋଠରୀ, ଆଘାତ (ଆ—ହନ୍ + ଅ,) ସମାଚାର (ସମ୍ ଆ—ଚର୍ + ଅ) ସଂବାଦ, ନିବେଦନ—ବନ୍ଦାପନା, ମଞ୍ଜୁଷା ମୁକୁଟା—ମହେନ୍ଦ୍ର ପର୍ବତ ମଞ୍ଜୁଷା ରାଜ୍ୟର ଶୀର୍ଷ ଦେଶରେ ଅବସ୍ଥିତ ଥିବାରୁ ମୁକୁଟ ରୂପେ ବର୍ଣ୍ଣିତ, ସ୍ୱାଦ—ରସନାରସାସ୍ୱାଦନ, ଶୋଭା—ନୟନ ରସାସ୍ୱାଦନ । ଗନ୍ଧ—ନାସାରସାସ୍ୱାଦନ, ରସାସ୍ୱାଦନ (ରସ [illegible] ଇ + ଅନ) ପ୍ରୀତିକର, ଉଦ୍ୟାନ—ଉଦ୍ୟାନ ଖଣ୍ଡ, ଗନ୍ଧମୟ ଫଳ ପରିପୂର୍ଣ୍ଣ ଅଞ୍ଚଳ, ଉପହାର (ଉପ—ହୃ + ଅ) ଭେଟି, ରମ୍ଭା—କଦଳୀ, ନାରିକେଳ—ନଡ଼ିଆ, କୃଶୋଦରୀ (କୃଶ ଉଦର ଯାହାର, ସ୍ତ୍ରୀ ଈ, ବହୁବ୍ରୀହି) କ୍ଷୀଣଦେହା, ପବମାନ—ପବନ, ଚମ୍ପୂ—ଗଦ୍ୟ ପଦ୍ୟ ମିଶ୍ରିତ କାବ୍ୟ, କବିସୂର୍ଯ୍ୟଙ୍କର କେତେ ରଚନା ଚମ୍ପୂ ଗଞ୍ଜାମ ଅଞ୍ଚଳରେ ବିଶେଷ ଭାବରେ ଆଦୃତ, ଲଳିତ—ମଧୁର, ସ୍ଫୁଟିତ (ସ୍ଫୁଟ୍ + ତ)—ଫୁଲ ଉଠିଥିବା, ହିଲ୍ଲୋଳ—ତରଙ୍ଗ, ସମୀର (ସମ୍—ଈର୍ + ଅ)—ପବନ, ଉଲ୍ଲାସ (ଉତ୍—ଲସ୍ + ଅ) ହର୍ଷ, ଆନନ୍ଦ, ସ୍ୱଜନ—ନିଜ ଦେଶ, ପ୍ରେମ [ପ୍ରୀ + ଇମନ୍], ଖଚିତ—ଜଡ଼ିତ, ଯୁକ୍ତ, ବକାଳି [ବକ + ଆଳି]—ବକପଂକ୍ତି, ଶଙ୍ଗ [ଗମ୍ + ସନ୍]

ଦେହ, ସୁରମ – ଲକ୍ଷା, ସୈକତ [ସିକତା+ଅ] ବାଲୁକାମୟ ପ୍ରାନ୍ତର, ମହୋଦଧି । [ମହ – ଉଦ – ଧା + ଇ] ସମୁଦ୍ର, ଶୁଚ ପବନ, ତୁଙ୍ଗ [ତୁନଜ+ଅ] ଉଚ, ପନ୍ତା [ପ୍ରାନ୍ତର ଶବ୍ଦରୁ ଅପଭ୍ରଂଶ], ପ୍ରଣତ [ପ୍ର-ନମ୍+କ୍ତ] – ନମସ୍କାର, କେତନ – ପତାକା (ଭକ୍ତମାନେ ଦେଉଳରେ ପତାକା ଉଡ଼ାଇ ଥାଆନ୍ତି), ଗନ୍ଧବାହ—(ଗନ୍ଧ—ବହ୍ + ଣିଚ + ଅ) ପବନ, କମ୍ପୀଙ୍ଗ — ମନ୍ଦିର ମଧ୍ୟରେ ଦେବତାଙ୍କ ଅସ୍ଥାନ କକ୍ଷ ସ୍ଥାନ, ସନ୍ତ—ସନ୍ଥ, ସାଧୁ, ସ୍ୱରାଜ୍ୟ—ଭାରତର ସ୍ୱାଧୀନତା ଲାଭ କାମନା ଆନ୍ଦୋଳନର (ଗୋପବନ୍ଧୁ ଏହି ଆନ୍ଦୋଳନରେ ଓଡ଼ିଶାର ନେତୃତ୍ୱ ନେଇଥିଲେ) ବ୍ରତତୀ—ଲତା, ଅବାହନ—ଆହ୍ୱାନ ବସର୍ଜିତ—ବସର୍ଜନ ବଂଶୀରନ୍ଧ୍ର—ବଂଶୀରେ ଥିବା ଛିଦ୍ର, ଅସ୍ଫୁଟ—ଅସ୍ପଷ୍ଟ, ଯୁଗଳ—ବେନି, ଉଭୟ, ଗନ୍ଧୋଦ୍ଧୃ—ସୁଗନ୍ଧିର ସତ୍ତା, ନୀରଜ ବହାରୀ......ବହାର – ଶ୍ରୀକୃଷ୍ଣ ଦ୍ୱାପର ଯୁଗରେ ବୃନ୍ଦାବନରେ ଗୋପୀମାନଙ୍କ ସହିତ ବହାର କରୁଥିଲେ । ଏବେ କଳିଯୁଗରେ ସତ୍ୟବାଦୀରେ ଶ୍ରୀକୃଷ୍ଣ ଅବସ୍ଥାନ କରୁଅଛନ୍ତି । ସତ୍ୟବାଦୀକୁ ଗୁପ୍ତବୃନ୍ଦାବନ କହନ୍ତି । ସୁଷମା – ଶୋଭା, ପଦାନ୍ତର (ଅନ୍ୟ ପଦ, କର୍ମଧାରୟ, ନତ୍ୟ), ମାଧୁରୀ ( ମଧୁର + ଭାବାର୍ଥେ ଈ )--ସୌରଭ, ମଧୁରତା, ମୋ ପ୍ରିୟ ଆଶ୍ରମ—ସତ୍ୟବାଦୀରେ ଉତ୍କଳମଣିଙ୍କର ଆଶ୍ରମ ଥିଲା, ସୋଦର [ସମାନ ଉଦର ଯାହାର]--ସହୋଦର, ବନ୍ଧୁ, ଅନନ୍ତବାସୀ [ଅନ୍ତେ—ବସ୍ + ଇନ୍] ଶିଷ୍ୟ–ଛାତ୍ର, ବଷଣ୍ଣ [ବ—ସଦ୍ + କ୍ତ] ଦୁଃଖିତ ବଦର୍ଣ୍ଣ—ବବର୍ଣ୍ଣ, ତ୍ରାସ [ତ୍ରସ୍ + ଅ], ବୈଭବ [ବିଭବ + ସ୍ୱାର୍ଥରେ ଅ] ଐଶ୍ୱର୍ଯ୍ୟ, ଅନଳ—ଦାବ, ତ୍ରାସ—ବେଦନା, ଦୁଃଖ, ମନୋଜ୍ଞ—[ମନଃ—ଜ୍ଞା + ଅ] ମନୋହର, ସିଦ୍ଧି [ସିଧ୍—କ୍ତି] ସାର୍ଥକତା, ଲାବଣ୍ୟ [ଲବଣ+ଯ] ସୌନ୍ଦର୍ଯ୍ୟ, ବକଳ—ଦ୍ୱିଧା, ତଡ଼ାଗ—ପୁଷ୍କରିଣୀ, ବପର୍ଯ୍ୟୟ [ ବ—ପରି—ଇ + ଅ] ପରିବର୍ତ୍ତନ, ଧ୍ୱଂସ,-ଐଶ୍ୱର୍ଯ୍ୟ [ଈଶ୍ୱର + ଯ ], ଅପସାର–ଅଙ୍ଗ ବିଭୂତ ।

ଯୋଗାରୂଢ଼ [ଯୋଗ—ଆ—ରୁହ + କ୍ତ] ଯୋଗରେ ଆସୀନ, ଶୈବାଳ – ଶିଉଳି, ଉନ୍ନତ [ ଉତ୍ – ନମ + କ୍ତ] ଉଚ, କାୟା – ଛାୟା,

ଉଦାସ — ଉଦାସୀନ, ନୀରବ [ନିଃ-ଭୁ+ଅ] ନିଃଶବ୍ଦ, ପିପାସା [ପା-ସନ୍ × ଅ-ସ୍ତ୍ରୀ ଆ] ତୃଷା, ଇଚ୍ଛା, ପୋତ — ନୌକା, ତତ୍ତ୍ୱ -- ଦାର୍ଶନିକ ତତ୍ତ୍ୱ ବା ତଥ୍ୟ, ସୁରଙ୍ଗ — ସନ୍ଧ୍ୟାଳ, ବିରକ୍ତ [ବି—ରନ୍ଜ+ତ] ବଗଗା, ଭୂତ [ଭୂ+ତ] ଐଶ୍ୱର୍ଯ୍ୟ, ଶ୍ୱାପଦ [ ଶ୍ୱନ ପଦ ପାଦ ପଦ ଯାହାର [ବହୁବ୍ରୀହି] ହିଂସ୍ରଜନ୍ତୁ, ନିଶୀଥ — ରାତ୍ରି, ସମୀରଣ [ସମ — ଈର୍ + ଅନ୍] ପବନ, ନିର୍ବାସିତ [ନିର — ବସ+ଣିଚ୍+ତ] ବହିଷ୍କୃତ, ବନ୍ଦୀ, ସନ୍ଦେଶ [ସମ୍ — ଦିଶ୍=ଅ] ସମ୍ବାଦ, ଉନ୍ମୁକ୍ତ [ଉତ — ମୁଚ୍+ତ] ଖୋଲା, ଉଦ୍ବେଗ [ଉତ୍ — ବିଜ୍+ଅ] ଆବେଗ, ଶୌର୍ଯ୍ୟ [ ଶୂର+ଯ] ବୀରତ୍ୱ, ହର୍ମ୍ୟ — ପ୍ରାସାଦ, ଚ୍ଛେଦ [ ଛିଦ୍+ଅ ] ଖାଲ, ଅର୍ଘ୍ୟ — ପୂଜୋପକରଣ, ବ୍ୟାଜ — ଛଳ, ବରବରଣୀ — ସୁନ୍ଦରୀ ସ୍ତ୍ରୀ, ଅଙ୍ଗନମୁ [ଅଙ୍ଗ-ଗା+ଅ] ରଙ୍ଗ, ସ୍ୱପ୍ନ [ ସ୍ୱପ୍ + ଅନ ], ପାଟଳ — ସୁନ୍ଦର, ଧୃତ [ଧୃ + ତ] ଧୈର୍ଯ୍ୟ, ରୁକ୍ଷ — କର୍କଶ, ରିକ୍ତ [ ରିଚ୍ + ତ ] ଶୂନ୍ୟ, ଶ୍ମଶାନ [ଶବ — ଶୀ-ଅନ] ମଶାଣି, ସମ୍ମାନ [ ସମ — ମନ+ଅ ] ଗୌରବ; ସ୍ନିଗ୍ଧ — କୋମଳ ଭୂଷ, ପୌରୁଷ [ପୁରୁଷ — ଅଭ୍ୟର୍ଥେ] ବୀରତ୍ୱ, ନିଧନ [ନି — ଧନ୍ — ଅ] ବିନାଶ, ବ° ରେ ନିଧନ ।

ସାରକଥା — କବି ବନ୍ଦୀଶାଳାରେ ଥିବା ସମୟରେ ଦକ୍ଷିଣ ଦିଗରୁ ବହି ଆସୁଥିବା ମଳୟ ପବନ ସ୍ପର୍ଶ କରି, ସେହି ପବନ ପଥରେ ଉତ୍କଳର ସେଉଁସବୁ ସୁନ୍ଦର ସ୍ଥାନ ଉପର ଦେଇ ଆସୁଥିଲା ସେ ସବୁ ବିଷୟରେ ଚିନ୍ତା କରୁଅଛନ୍ତି । ତାଙ୍କୁ ବୋଧ ହେଉଅଛି, ଯେପରି ମଳୟ ପବନ ସ୍ପର୍ଶରେ ଜନ୍ମରେ ତାଙ୍କୁ ଗୋପନରେ ବାହାରର ସମ୍ବାଦ ଦେବାକୁ ଆସୁଅଛି । ସେ ପବନ ସ୍ପର୍ଶରେ ତାଙ୍କ ହୃଦୟରେ ଆନନ୍ଦ ଜାତ ହେଉଅଛି ଓ ତାଙ୍କ ମାନସ ପଟରେ କେତେ ପୂର୍ବଛବି ଫୁଟି ଉଠୁଅଛି । ସେ ହୃଦୟର ଆବେଗରେ ମଳୟ ପବନକୁ କହୁଅଛନ୍ତି,—

"ତୋର ଘରକଥା ମନେ ପଡ଼ି ଯାଉଅଛି । ସେଠାରେ ଅତୀତମାନଙ୍କ ପ୍ରତି ଆଦର, ଦେବଦୂତ କଥା ମନେ ପଡ଼ୁଛି । ମାତି ଏ ବନ୍ଦଶାଳରେ

ଉକ୍ତ ଘଟୁକଥା ଚିନ୍ତା କରିବା ବୃଥା । ହେ ବସନ୍ତ ପବନ, ତୁ ଦକ୍ଷିଣ ଦିଗରୁ ଆସୁଛୁ । ସେ ଦେଶର ସମ୍ବାଦ କହି ମୋର ସନ୍ତପ୍ତ ହୃଦୟକୁ ଶୀତଳ କର । ମୋର ପ୍ରିୟସ୍ଥଳୀ ସବୁ ତୋତେ ବାଟରେ କେତେ ଆଦର ଅଭ୍ୟର୍ଥନା କରିଥିବେ । କେତେ ଖବର ପଠାଇ ଥିବେ । ମୁଁ ସେ ସବୁ ଶୁଣିବାକୁ ବ୍ୟାକୁଳ । ମଞ୍ଜୁଷାର ମହେନ୍ଦ୍ର ପର୍ବତ ତୋତେ ସୁଗନ୍ଧ ଫୁଲ ଉପହାର ଦେଇଥିବ । ତୁ ପହଞ୍ଚିବାରୁ ତାର ବୃକ୍ଷଶାଖାମାନେ ଆନନ୍ଦରେ ନାଚି ଉଠିଥିବେ । ଗଞ୍ଜାମର ଉଦ୍ୟାନଖଣ୍ଡ ତୋତେ ଆମ୍ବ, କଦଳୀ, ଦେଳ, ଲେମ୍ବୁ, ନଡ଼ିଆ, ପଣସ, ଖଜୁରୀ, ତାଳ ପ୍ରଭୃତି କେତେ ଫଳ ଉପହାର ଦେଇଥିବେ । ସେସବୁ ଯେପରି ସୁନ୍ଦର, ସୁଗନ୍ଧି ଓ ଆମୋଦଦାୟକ, ସେହି-ପରି ମଧ୍ୟ ସୁସ୍ୱାଦୁ । ତୁ ବଧିରକ୍ଷା କରି ସେ ସବୁକୁ କେବଳ ତୁହି ଆସ୍ୱ-ଥିବୁ । ଋଷିକୁଲ୍ୟା ନିକଟରେ ପହଞ୍ଚି ତୁ ତାର ତୀରବାସୀଙ୍କର ମଧୁର କଣ୍ଠ-ଗୀତ ଶୁଣିଥିବୁ । ତାପରେ ଚିଲିକାର ବକ୍ଷ ତୋର ସ୍ପର୍ଶରେ କମ୍ପି ଉଠି ଥିବ । ଚିଲିକାରେ ଥିବା ନୌକା ସବୁ ହଲିଯାଇଥିବେ । ଚିଲିକା ନିକଟବର୍ତ୍ତୀ କାନନରେ ପ୍ରେମର ଲହରୀ ଖେଳି ଯାଇଥିବ । ସୋଲରି ପାହାଡ଼ ଏ ଦୃଶ୍ୟ ଦେଖି ଆନନ୍ଦ ଅନୁଭବ କରିଥିବ । ଚିଲିକା ବକ୍ଷରେ ସନ୍ତରଣ କରୁଥିବା ହଂସ, ହଂସରାଜ, ସାରସ ପ୍ରଭୃତି ପକ୍ଷୀମାନେ ତରଙ୍ଗ ଦୋଳାରେ ଆନ୍ଦୋଳିତ ହୋଇଥିବେ । ତତ୍ପରେ ତୁ ଗନ୍ତପଥ ଫେରାଇ ଶ୍ରୀକ୍ଷେତ୍ରକୁ ଯାଇଥିବୁ । ସେଠାରେ ମହୋଦଧିରେ ସ୍ନାନ କରି ହୃଦୟରେ ପବିତ୍ର ଆନନ୍ଦ ଉପଭୋଗ କରିଥିବୁ । ଶ୍ରୀକ୍ଷେତ୍ରରେ ଜଗନ୍ନାଥଙ୍କ ମନ୍ଦିରର ବାନା ତୋର ସ୍ପର୍ଶରେ ଆନ୍ଦୋଳିତ ହୋଇଥିବ । ସେ ଶ୍ରୀକ୍ଷେତ୍ର ମୋର ଅତି ପ୍ରିୟ । ଶ୍ରୀ ଜଗନ୍ନାଥ ମୋ ପାଇଁ କିଛି ଆଦେଶ ଦେଇଅଛନ୍ତି କି ? ପୁରବାସୀଙ୍କ ନିକଟରୁ ମୋ ପାଇଁ କିଛି ସମ୍ବାଦ ଆଣିଛୁ କି ? ପୁରୀର ସନ୍ଥ, ସେବକ, ମହାନ୍ତ, ସାଧାରଣ ଲୋକେ ଏବେ ସ୍ୱରାଜ୍ୟ କଥା ଚିନ୍ତା କରନ୍ତି କି ? ପୁରୀଧାମ ତ୍ୟାଗ କରି ତୁ ଉତ୍ତରକୁ ଆସି ସତ୍ୟବାଦୀର ମଞ୍ଜୁଳ କୁଞ୍ଜରେ ଅଟକି ଯାଇଥିବୁ । ପିଲେ ତୋତେ ସ୍ୱାଗତ ସମ୍ଭାଷଣ କରିଥିବେ । ତୁ ଗୋପୀନାଥଙ୍କ ମନ୍ଦିରରେ ପ୍ରବେଶ

ଉଦ୍ଧବାକୁ ତାଙ୍କ ବଂଶୀରୁ ମଧୁର ଅସ୍ଫୁଟ ଧ୍ୱନି ବାହାରୁଥିବ । ତାଙ୍କ ଶ୍ରୀଅଙ୍ଗରୁ ଫୁଲ ଖସି ପଡୁଥିବ ଓ ମସ୍ତକର ବାଙ୍କ ମୟୂର ଚୂଳ ହଲି ଯାଉଥିବ । ବଉଳ, ସେବତୀ, ମଲୁଅ, ଦୟଣା ପ୍ରଭୃତି ଫୁଲର ସୁଗନ୍ଧ ଚହଟି ଯାଉଥିବ । ସଖୀବାଗରେ ଥିବା ମୋର ପ୍ରିୟ ଆଶ୍ରମ ତୋ ଦୃଷ୍ଟିପଥରେ ପଡ଼ୁଛି କି ? ମୋର ବନ୍ଧୁମାନେ, ପ୍ରିୟ ସହକର୍ମୀ ଛାତ୍ର ଓ ପ୍ରତିବେଶୀମାନେ କୁଶଳରେ ଅଛନ୍ତି ତ ? ମୋର ବିଚ୍ଛେଦରେ ସେମାନେ ବିଷର୍ଣ୍ଣ ହୋଇ ଯାଇଅଛନ୍ତି କି ? ସଖୀବାଗର କୁଞ୍ଜ ପାର ହୋଇ ଭୁବନେଶ୍ୱରର ଲିଙ୍ଗରାଜଙ୍କ ମନ୍ଦିରକୁ ଆସିଥିଲୁ । ସେଠାରେ ପ୍ରାଚୀନ ଉତ୍କଳକଳାର କ୍ରମ ବିନାଶ ଦେଖି ତୋ ମନରେ ନିଶ୍ଚୟ ଦୁଃଖ ହୋଇଥିବ । ସୂକ୍ଷ୍ମ କାରୁକାର୍ଯ୍ୟ ବିଶିଷ୍ଟ କେତେ ମନ୍ଦିର ଧ୍ୱଂସ ସ୍ତୂପରେ ପରିଣତ ହେଲଣି । କେତେ ସୁନ୍ଦର ମୂର୍ତ୍ତି ବିକଳାଙ୍ଗ ହୋଇ ଏଣେ ତେଣେ ପଡ଼ିଅଛନ୍ତି । କେଉଁଠାରୁ ଅବା ଅପୂର୍ବ ସୁନ୍ଦର ମୂର୍ତ୍ତି ମାଟିତଳରୁ ବାହାରୁଅଛି । କେଉଁଠାରେ ବାପୀ ପୁଷ୍କରିଣୀ ଲତାଗୁଳ୍ମରେ ଆଚ୍ଛାଦିତ ହେଲେଣି । ଏ ସବୁ ଧ୍ୱଂସ ରାଶିମଧ୍ୟରେ ସଗର୍ବରେ ଦଣ୍ଡାୟମାନ ଲିଙ୍ଗରାଜଙ୍କ ମନ୍ଦିର । ତାଙ୍କୁ ତୁ ପ୍ରଣାମ କରିଥିବୁ । ସେ ବିଷାଦମୟ ଦୃଶ୍ୟ ଦେଖି ସେଠାରେ ବେଶୀ ସମୟ ରହିପାରି ନ ଥିବୁ । ଲିଙ୍ଗରାଜଙ୍କର ଆଶୀର୍ବାଦ ନେଇ ତା ପରେ ତୁ ଖଣ୍ଡଗିରିରେ ପହଞ୍ଚିବୁ । ଖଣ୍ଡଗିରିରେ ଉତ୍କଳର ଗୌରବମୟ ଇତିହାସ ଖୋଦିତ ହୋଇଅଛି । ଥରେ ଯୌବନରେ ମୁଁ ସେଠାକୁ ଯାଇ କଳ୍ପନା ନେତ୍ରରେ କେତେ ପ୍ରାଚୀନ ଛବି ଦେଖିଥିଲି । କଳିଙ୍ଗାଧିପ ଖାରବେଳଙ୍କର କୀର୍ତ୍ତିରାଜି, ତାଙ୍କର ରଣସଜ୍ଜା, ଦେଶ ବିଜୟ, ଧର୍ମନିଷ୍ଠା, ଗୁମ୍ଫା ନିର୍ମାଣ ପ୍ରଭୃତି ମୋର କଳ୍ପନାରେ ଜାଗି ଉଠିଥିଲା । ଆଜି ସେ ସବୁ ଗୌରବ ଲୁପ୍ତ ହୋଇଅଛି । ଅଛି କେବଳ ଖଣ୍ଡଗିରି । ଆଜି ଉତ୍କଳର ସନ୍ତାନ ସେ ପୂର୍ବ ଗୌରବକୁ ଭୁଲି ଯାଇଅଛି; ମାତ୍ର ସେ ଗରିମାର ସାକ୍ଷୀସ୍ୱରୂପ ରାଣୀହଂସପୁର ବିଦ୍ୟମାନ । ଶୁଣାଯାଏ ଏବେ ସୁଦ୍ଧା ଖଣ୍ଡଗିରିର ଗୁମ୍ଫାମାନଙ୍କରେ ସାଧୁ ସନ୍ନ୍ୟାସୀମାନେ ବାସ କରୁଅଛନ୍ତି । ତୋର ଆସିବା ଦେଖି ଗିରିଗହ୍ୱରର ସଙ୍ଗୀତ ଗାଇ ଉଠିଥିବେ ।

ମହାନଦୀର ଆଦର "ଗ୍ରହଣ କରିବାକୁ ତୁ କଟକରେ ନିଶ୍ଚୟ କିଛି ସମୟ ରହି ଯାଇଥିବୁ । ସେଠାରେ ବାରବାଟିର ଦୁର୍ଦ୍ଦଶା ଦେଖି ତୋ ମନରେ କି ବିଷାଦ ଜନ୍ମି ନ ଥିବ ? ତୋର ମଧୁର ସ୍ପର୍ଶରେ ମହାନଦୀର ଲହରୀମାଳ ସ୍ଫୀତ ହୋଇ ଉଠିଥିବ । ଆଜି ବାରବାଟି ଉତ୍କଳୀୟ ଶୌର୍ଯ୍ୟ-ବୀର୍ଯ୍ୟର ସମାଧି ସ୍ତୂପରୂପେ ଅବସ୍ଥିତ । ସେ ନବତଳ ପ୍ରାସାଦ ଆଉ ନାହିଁ । ଉତ୍କଳର କବି ନାହାନ୍ତି, ତାର ବଳିଷ୍ଠ ପ୍ରଜାକୁଳ ନାହାନ୍ତି । ଆଜି ବାର-ବାଟିର ପ୍ରତିବିମ୍ବ ମହାନଦୀ ବକ୍ଷରେ ପଡ଼ୁନାହିଁ, କିମ୍ବା ସେ ବୀରମାନଙ୍କ ଧ୍ୱନିରେ ପ୍ରତିଧ୍ୱନିତ ହେଉନାହିଁ । ବାରବାଟିର ଧ୍ୱଂସାବଶେଷ ଦେଖି କିଏ ହୃଦୟ ଧରି ରହି ପାରିବ ? ସେ ଯେପରି ପ୍ରାଚୀନ ଓଡ଼ିଆଜାତିର ଶ୍ମଶାନ । ସେହି ବାରବାଟିକୁ ଦେଖି ଦୁଃଖପୂର୍ଣ୍ଣ ହୃଦୟରେ ତା ପ୍ରତି ସମ୍ମାନ ପ୍ରଦର୍ଶନ କରିଥିବୁ ।"

ଏହିପରି ଭାବରେ ଉତ୍କଳମଣି ଗୋପବନ୍ଧୁ ବନ୍ଦୀଶାଳାରେ ଥିବା ଅବସ୍ଥାରେ ମାତୃଭୂମି ଉତ୍କଳର ବିଭିନ୍ନ ସ୍ଥାନ ବିଷୟରେ ଚିନ୍ତାକରି ତାଙ୍କ ସ୍ୱଦେଶ ପ୍ରୀତିର ପରିଚୟ ଦେଇ ଅଛନ୍ତି ।

---

## (୩୬) ଧଉଳି ପାହାଡ଼

### (କବି ରାୟ ସାହେବ ଯଦୁଚରଣ ପଟ୍ଟନାୟକ)

**ଶବ୍ଦାର୍ଥ** :—(ପୃ୧୭୫ଏ) ମୌନ (ମୁନି+ଅ) ନୀରବ, ତୁଙ୍ଗ—ଉଚ୍ଚ, ସ୍ଥୂଳ-ମୋଟ ବୁଢ଼ା, ତପସ୍ୱୀ (ତପଃ+ବିନ୍), ଋଷି, ଶର୍ବରୀ-ରାତି, ଗୌରବ ଚାଳା-ଗୌରବର ଚିହ୍ନ; (ପୃ୧୭୬) ଶ୍ୱାପଦ (ଶ୍ୱାନର ପଦ ପରି ପଦ ଯାହାର) ହିଂସ୍ରଜନ୍ତୁ, ସଙ୍କେତ [ସମ-କିତ୍+] ଚିହ୍ନ, ଅସି-ଖଡ୍ଗ, ଅସ୍ତ୍ର-ଶସ୍ତ୍ର, କରବାଳ-ଖଡ୍ଗ, ଚକ୍ରନେ-ବିଷୟରେ, ପ୍ରମାଦ [ ପ୍ର-ମଦ୍+ଅ ] ଭୟ, ବିପଦ; [ ପୃ ୧୭୭ ] ଦର୍ପ (ଦୃପ୍+ଅ ) ଗର୍ବ, ହିଙ୍ଗୁ-ଉଷ୍ମାଳ, ସଜଳ-ଅଶ୍ରୁସ୍ଥ, ତନୟ-ପୁତ୍ର, ଅରୁଣ-ରକ୍ତବର୍ଣ୍ଣ, ଉଲ୍ଲାସ [ ଉତ୍-ଲସ୍+ଅ ] ହର୍ଷ,

ସାହସିକ [ସାହସ+ଇକ୍] ସାହସୀ, ସମାଧି [ସମ-ଆ-ଧା+ଇ] ଗଭୀର-ଚିନ୍ତା, ଧ୍ୟାନ (ଧ୍ୟୈ+ଅନ), [ ପୃ ୧୭ ] ଉନ୍ମାଦ ( ଉତ୍-ମଦ୍+ଅ ) ଉତ୍ତେଜନା, ବଂ ରେ ଉନ୍ମତ୍ତ, ସୌଧ (ସୁଧ+ଅ) ଅଟ୍ଟାଳିକା, ଦାରୁଣ କଠୋର, ଜିଗୀଷା [ଜି+ସନନ୍ତରେ ଅ+ସ୍ତ୍ରୀ ଆ] ଜୟ କରିବାର ଇଚ୍ଛା; ଶୋଣିତ:ରକ୍ତ. ସ୍ରୋତ [ସ୍ରୁ+ତସ୍] ଚିତା-ଶ୍ମଶାନ ଅଗ୍ନି, ଅସାର (ନାହିଁ ସାର ଯହିଁରେ) ସାରହୀନ, ମଧୁର (ମଧୁ+ର), (ପୃ ୧୭୯) (ଲୁଲ୍+ତ) ଲୋଟି, ମୁଗ୍ଧ (ମୁହ୍+ତ ( ଜ୍ୱଳନ୍ତ (ଜ୍ୱଳ୍+ଶତୃ) ଜଳନ୍ତା, ଇନ୍ଧନ-କାଷ୍ଠ ପ୍ରଭୃତି ଦାହ୍ୟ ପଦାର୍ଥ, ପୁଚ୍ଛ-ଲାଙ୍ଗୁଳ, ଭୀମ, (ଭୀ+ମ) ଭୟଙ୍କର, ମଡ଼କ-ସଂକ୍ରାମକ ରୋଗ, ଦାସ୍ତା-ଦୃଢ଼, ଭୂଷଣ (ଭୂଷି+ଅନ) ଅଳଙ୍କାର, କଷଣ (କଷ୍+ଅନ) କଷ୍ଟ, ଦୁଃଖ, (ପୃ ୧୮୦) ପ୍ରତିବେଶୀ (ପ୍ରତି—ବିଶ୍+ଇନ୍) ପଡ଼ୋଶୀ, ମୂର୍ଖ (ଖନ+ଅ), ଦିବସ ପତି—ସୂର୍ଯ୍ୟ, ଧେନୁ—ଗୋରୁ, ପ୍ରଦୀପ୍ତ [ ପ୍ର—ଦୀପ୍+ତ ] ତେଜୋଦ୍ଧାନ (ପୃ ୧୮୧) ଦରୀ—ପର୍ବତ ଗହ୍ୱର, ଶଶୀ (ଶଶ+ଇନ) ଚନ୍ଦ୍ର, ବିକଶି—ପ୍ରକାଶିତ ହୋଇ, ଚୂଳ—ଅଗ୍ରଭାଗ, ଠାଣି—ପାହାଡ଼ିଆ ଭୂମି ।

## ଟିପ୍ପଣୀ:—

**ଧଉଳି ପାହାଡ଼**—ଏହା ଭୁବନେଶ୍ୱର ନିକଟରେ ଦୟାନଦୀ କୂଳରେ ଅବସ୍ଥିତ । କଳିଙ୍ଗ ବିଜୟ ପରେ ଏହିଠାରେ ସମ୍ରାଟ ଅଶୋକଙ୍କ ହୃଦୟରେ ଭାବାନ୍ତର ଉପସ୍ଥିତ ହୋଇଥିଲା । ଏହି ପାହାଡ଼ ଉପରେ ଅଶୋକଙ୍କର ଅନୁଶାସନ ଖୋଦିତ ହୋଇଛି ।

**ଧୂମକେତୁ**—"ଲଞ୍ଜାତାରା" ଏହା ଆକାଶରେ ଦେଖାଗଲେ ରାଜ୍ୟରେ ଦୁର୍ଭିକ୍ଷ, ମଡ଼କ ପ୍ରଭୃତି ହୁଏ ବୋଲି ଲୋକଙ୍କର ବିଶ୍ୱାସ ।

**ଦଇଆ**—ଭୁବନେଶ୍ୱର ନିକଟରେ ପ୍ରବାହିତ ହେଉଥିବା ନଦୀ । ଦଧୀଚି ମୁନି ଏହା କୂଳରେ ଆଶ୍ରମ କରିଥିଲେ ବୋଲି ଶୁଣାଯାଏ ।

**ସାରକଥା** — କବି ଧଉଳି ପାହାଡ଼କୁ ସମ୍ବୋଧନ କରି କହୁଅଛନ୍ତି, "ଧଉଳି ପାହାଡ଼, ତୁମ୍ଭେ ଆଜି କାହିଁକି ମୌନବ୍ରତରେ ବସିଅଛ ? ଆଉ କେତେ କାଳ ପର୍ଯ୍ୟନ୍ତ ଏହି ଦାଣ୍ଡିଆ ବାଲିରେ ଉତ୍କଳର ପ୍ରାଚୀନ ଗୌରବକୁ ଖୋଜୁଥିବ ? ବନବାସୀ ତପସ୍ୱୀ ପରି ବସି କଣ ଚିନ୍ତା କରୁଅଛ ? ପୂର୍ବକାଳର ସେ ଗୌରବ କାହାଣୀକୁ ଥରେ ଶୁଣାଅ । ସେ ଅଶୋକ ରାଜା କାହାନ୍ତି ? ତାଙ୍କର ଧର୍ମ କାହିଁ ବା କର୍ମ କାହିଁ ? ତୁମ୍ଭେ ଗୁରୁସ୍ଥାନ ଅଧିକାର କରି ରାଜପୁତ୍ର ଅଶୋକଙ୍କୁ ପବିତ୍ର ଧର୍ମଶିକ୍ଷା ଦେଇଅଛ । ମୁଁ କଳ୍ପନା ବଳରେ ସେ କାଳର ଘଟଣା ସମସ୍ତ ଦେଖି ପାରୁଛି । ସେ ସବୁ କାଲିର ଘଟଣା ପରି ବୋଧ ହେଉଅଛି । ସହସ୍ର ସହସ୍ର ବୀର ସୈନିକ ରଣମଦରେ ଉନ୍ମତ୍ତ ହୋଇ ଉତ୍ତର ଦିଗରୁ ମାଡ଼ି ଆସିଲେ । ସେମାନଙ୍କର ପଥ ରକ୍ତ ସ୍ରୋତରେ ପ୍ଲାବିତ ହେଲା । ସେମାନଙ୍କର ଅସ୍ତ୍ର ଶତ ଶତ ବୀରଙ୍କର ରକ୍ତପାନ କଲା । ସେମାନେ ଆସି ମହାନଦୀରେ ପ୍ରବେଶ କଲାକ୍ଷଣି ସେମାନଙ୍କ ହସ୍ତରୁ ବାରମ୍ବାର ତରବାରୀ ଖସି ପଡ଼ିଲା । ଦୂରରେ ପ୍ରଚଣ୍ଡ ଅଗ୍ନିଶିଖା ଦେଖାଗଲା । ସୈନିକମାନେ ଏହି ଅଦ୍ଭୁତ ବ୍ୟାପାର ଦେଖି ସମ୍ମୋହିତ ହୋଇଗଲେ । ସୈନ୍ୟମାନେ ବିନୟରେ ରାଜାଙ୍କ ନିକଟରେ ଜଣାଇଲେ, 'ପ୍ରଭୁ, ଏ କଳିଙ୍ଗ ଦେଶ ଦେବତାମାନଙ୍କର ଲୀଳାଭୂମି, ଏଠାରେ ଯୁଦ୍ଧ କରିବା ଉଚିତ ନୁହେ ।' କିନ୍ତୁ ରାଜା ଗର୍ବରେ ଉନ୍ମତ୍ତ ହୋଇ ଉତ୍ତର କଲେ, 'ମୁଁ କୌଣସି ଦେବତା ମାନେ ନାହିଁ । ଏବୁ ବାସ୍ତବରେ କେବଳ ଦେବତାର ଅସ୍ତିତ୍ୱ ନାହିଁ । ହୀନ ଦୁର୍ବଳ ଲୋକର ହୃଦୟରେହିଁ ଦେବତାର ସ୍ଥାନ । ଏହି ଅସ୍ତ୍ର ମୋର ଦେବତା । ଏହାରି ବଳରେ ମୁଁ ସବୁ ସାଧନ କରିବି । କଳିଙ୍ଗ ବୀର ଜାତିର ଦେଶ । ଏହାକୁ ଜୟ କଲେ ମୋର ଗୌରବ ବଢ଼ିବ । ଭାରତ ରାଜ୍ୟମାନଙ୍କ ମଧ୍ୟରେ କଳିଙ୍ଗ ଶୀର୍ଷସ୍ଥାନ ଅଧିକାର କରିବ । କଳିଙ୍ଗର ଅଧିବାସୀମାନେ ଚିର ସାହସିକ । ସେମାନେ ଆନନ୍ଦରେ ଅଶୋକଙ୍କର ସୈନ୍ୟମାନଙ୍କ ସହିତ ଯୁଦ୍ଧ କରି ପ୍ରାଣ ଦେଲେ । ଶତ ଶତ କଳିଙ୍ଗବାସୀଙ୍କର ରକ୍ତରେ ଦୟା ନଦୀର ଜଳ ରକ୍ତବର୍ଣ୍ଣ ଧାରଣ କଲା ।

ଅଶୋକ ବିଜୟ ଉଲ୍ଲାସରେ ମତ୍ତ ହୋଇ ଶତ୍ରୁ ଶବରାଶି ଦେଖିଥିଲେ ।
ଏହି ସମୟରେ ହେ ଧଉଳ ପାହାଡ଼, ତୁମ୍ଭେ ତାଙ୍କ କାନରେ କି ମନ୍ତ୍ର ପାଠ
କଲ ଯେ ମହାରାଜ ଅଶୋକ ଧ୍ୟାନରେ ମଗ୍ନ ହୋଇ ଚକ୍ଷୁରୁ ଲୋତକ
ବର୍ଷଣ କଲେ । ତାଙ୍କ ହୃଦୟରେ ଦାରୁଣ ବ୍ୟଥା ଜାତ ହେଲା । ସେ ନିଜକୁ
ଧିକ୍କାର କରି କହିଲେ, "ହାୟ, ମୁଁ କି ଅନ୍ୟାୟ କଲି ! ଏତେ ମହା
ପ୍ରାଣୀ ବିନାଶ କରି କଳିଙ୍ଗ ଦେଶକୁ ଶ୍ମଶାନରେ ପରିଣତ କଲି । ମାତ୍ର
ମୋର ଜୀବନ କି ଭୀଷଣ ଅଶାନ୍ତିରେ ପୂର୍ଣ୍ଣ ହୋଇଅଛି । ଇନ୍ଦ୍ରିୟ ସୁଖରେ
ଦିନ କାଟି ମୁଁ ଜୀବନକୁ ପାପମୟ କରିଅଛି । ମୋ ପରି ରାଜ୍ୟବିସ୍ତାରୀ
ମୃତ୍ୟୁ ଓ ଯନ୍ତ୍ରଣା । ଆଜ ମୁଁ ପରମ ଶିକ୍ଷା ପାଇଅଛି । ଏହି କଳିଙ୍ଗ
ଦେଶ ମୋର ଗୁରୁ ସ୍ଥାନୀୟ । ଆଜଠାରୁ ମୋର ଜୀବନର ଗତି ପରିବର୍ତ୍ତନ
କରିବି । ଲକ୍ଷ ଲକ୍ଷ ପ୍ରାଣୀଙ୍କର ଦୁଃଖ ଦୁର୍ଦ୍ଦଶା ହରଣ କରି ପାପର
ପ୍ରାୟଶ୍ଚିତ୍ତ କରିବି ।"

ହେ ଧଉଳ ପାହାଡ଼, ସନ୍ଧ୍ୟା ସମୟରେ ସୂର୍ଯ୍ୟ ପଶ୍ଚିମ ଆକାଶକୁ ସିନ୍ଦୂର
ରଙ୍ଗରେ ରଞ୍ଜିତ କରି ଅସ୍ତ ହୋଇଯାନ୍ତି । ଗୋପାଳମାନେ ଧେନୁପଲ
ଘେନି ଘରକୁ ଫେରି ଆସନ୍ତି । ସନ୍ଧ୍ୟା ଦେବୀ କୃଷ୍ଣ ବସ୍ତ୍ର ପରିଧାନ କରି
ପୃଥିବୀକୁ ଆଗମନ କରନ୍ତି । ସେତେବେଳେ ତୁମ୍ଭ ନିକଟରେ ପକ୍ଷୀମାନଙ୍କର
ମଧୁର ଗୀତ ଶୁଣାଯାଏ । ସେହି ଗାନ ଶୁଣି ମୋ ମନରେ କେତେ ପ୍ରାଚୀନ
ଯୁଗର କଥା ଜାଗି ଉଠେ । ତୁମ୍ଭର ଭଲ ଦେଶରେ ଦୀପ୍ତ ରବି ଅସ୍ତ
ଯିବାର ଦେଖି ମନେ ହୁଏ, ଦିନେ ଗୌରବମୟ କଳିଙ୍ଗସୂର୍ଯ୍ୟ ଏହିପରି
ବିସ୍ମୃତିର କୂଳରେ ବୁଡ଼ି ଯାଇଥିଲେ । କଳିଙ୍ଗର ସେ ପ୍ରାଚୀନ ଗୌରବ
ଓ ବୀରତ୍ୱ କାଳସାଗରରେ ଲୁପ୍ତ ଯାଇଅଛି । ଲିଙ୍ଗରାଜଙ୍କର ତୁଙ୍ଗ ମନ୍ଦିର
ଓ ଆକାଶର ଚନ୍ଦ୍ର ସୂର୍ଯ୍ୟ ତାର ସାକ୍ଷୀ ଅଛନ୍ତି । ଉତ୍କଳର ପ୍ରାଚୀନ
ଗୌରବ ଓ ପ୍ରାଚୀନ ବିଭବ ଆଜ ସ୍ୱପ୍ନ ପରି ବୋଧ ହେଉଅଛି । ଯେଉଁ
କଳିଙ୍ଗବାସୀ ଦିନେ ଏତେ ଖ୍ୟାତି ଲାଭ କରିଥିଲେ ସେମାନେ କାହିଁ
ଗଲେ ? ସତ୍ୟ ଓ ସାହସର ଜନ୍ମଭୂମି କଳିଙ୍ଗ ପ୍ରତି ବିଧାତା ବାମ ହେଲେ
କାହିଁକି ? ସେ ରାଜା ନାହାନ୍ତି, ତାଙ୍କର ରାଜଧାନୀ ନାହିଁ, ପ୍ରାସାଦ

ନାହିଁ । ସତେ ଯେପରି ଯୋଦ୍ଧାଙ୍କ ସବୁ ଏହି ଦୟାନଦୀର କଳରେ ଭାସି ଯାଇଅଛି । ସେହି ଲିଙ୍ଗରାଜଙ୍କ ମନ୍ଦିର ଅଛି, ସେହି ଧଉଳଗିରି ଅଛି, ସେହି ଖଣ୍ଡଗିରି ଅଛି । ଏବେ ସୁଦ୍ଧା ସେମାନେ କଳିଙ୍ଗର ପ୍ରାଚୀନ ମହିମା ଗାନ କରି ମାନବ ହୃଦୟରେ ଗଭୀର ଦୁଃଖ ଜାତ କରୁଅଛନ୍ତି । ପ୍ରତି ଶିଳାରେ, ପ୍ରତି ଠାଙ୍ଗିରେ କଳିଙ୍ଗର ପ୍ରାଚୀନ କୀର୍ତ୍ତି ଗ୍ରଥିତ ହୋଇ ରହିଅଛି । ହେ ଧଉଳି ପାହାଡ଼, ସତେ କଣ ଏ ଦେଶର ଭାଗ୍ୟରେ ସେହି ଗୌରବମୟ ଦିନ ଫେରି ଆସିବ ନାହିଁ ?

**ସରଳ ବ୍ୟାଖ୍ୟା—**

(କ) ଦର୍ପେ ପଶୁପରି—ଏଥିରୁ ବା ବଡ଼ କି ଅଛି ଆଉ । [ପୃ ୬୭] ।

ଏହି ଅଂଶଟି 'ଧଉଳି ପାହାଡ଼' କବିତାରୁ ଆନୀତ । ଅଶୋକଙ୍କର ସୈନିକମାନେ ଦେବଭୂମି କଳିଙ୍ଗ ଦେଶ ଆକ୍ରମଣରୁ ବିରତ ହେବାପାଇଁ ଅନୁରୋଧ କରିବାରୁ ଅଶୋକ ଗର୍ବରେ ଉନ୍ମତ୍ତ ହୋଇ କହିଲେ, "ଦେବଭୂମି ବୋଲି କହି କଳିଙ୍ଗ ଦେଶ ଆକ୍ରମଣରୁ ବିରତ ହେବା ଉଚିତ ନୁହେଁ । ମୁଁ କୌଣସି ଦେବତାର ଅସ୍ତିତ୍ୱ ସ୍ୱୀକାର କରେ ନାହିଁ । କେବଳ ଭୀରୁ କାପୁରୁଷମାନେ ଦେବତାର କଳ୍ପନା କରି ତାର ଆଶ୍ରୟ ନେଇଥାନ୍ତି । ହୀନ ଦୁର୍ବଳ ଲୋକେ ଆତ୍ମପ୍ରତ୍ୟୟ ଅଭାବରୁ ଦେବତାଙ୍କର ଶରଣ ପାଇଥାନ୍ତି । ଖଡ୍ଗ ମୋ ପକ୍ଷରେ ଦେବତା । ତାରି ବଳରେ ମୁଁ ସବୁ ଅସାଧ୍ୟ ସାଧନ କରି ପାରିବି । ମୋର ଅସିଠାରୁ ବଡ଼ ଆଉ କିଛି ନାହିଁ ।"

(ଖ) ଶୁଭଯୋଗେ ଶତ......ତପସ୍ୟାର ଫଳ ।

ଅଶୋକ କଳିଙ୍ଗ ରାଜ୍ୟ ଜୟ କଲେ । ମାତ୍ର ଏହି ଯୁଦ୍ଧର ଭୀଷଣତା ଦେଖି ତାଙ୍କ ହୃଦୟରେ ଘୋର ଭାବାନ୍ତର ଜାତ ହେଲା । କଳିଙ୍ଗ ଯୁଦ୍ଧରେ ଯେଉଁ ନରହତ୍ୟା ଓ ଦୁଃଖ ସଂଘଟିତ ହୋଇଥିଲା ସେଥିରେ ମର୍ମାହତ ହୋଇ ଅଶୋକ ଧର୍ମମୟ ଜୀବନ ଯାପନ କରିବାକୁ ଦୃଢ଼ପ୍ରତିଜ୍ଞ

ହେଲେ । ଜନସମାଜର ଦୁଃଖରାଶି ଦୂର କରିବା ଶତ କଳିଙ୍ଗ ବିଜୟଠାରୁ ବଡ଼ ବୋଲି ସେ ହୃଦୟଙ୍ଗମ କରିପାରିଲେ । କେତେ ତପସ୍ୟା ଫଳରେ ପ୍ରାଣୀର ଦୁଃଖ ହରଣ କରିବା ପ୍ରବୃତ୍ତି ମନୁଷ୍ୟ ହୃଦୟରେ ଜନ୍ମିଥାଏ, କିନ୍ତୁ ଭଗବାନଙ୍କ ଅନୁଗ୍ରହରୁ କଳିଙ୍ଗ ବିଜୟ କରିବାକୁ ଆସି ଅଶୋକଙ୍କ ହୃଦୟରେ ଏହି ଭାବ ଜନ୍ମିଥିଲା । କୌଣସି ରାଜ୍ୟ ଜୟ କଲେ ଯେଉଁ ଯଶଲାଭ ହୁଏ, ପ୍ରାଣୀର ଦୁଃଖ ଦୂର କଲେ ତାହାର ଶତଗୁଣ ଯଶ ମିଳେ, ଏହି ଧାରଣା ଅଶୋକଙ୍କ ହୃଦୟରେ ଦୃଢ଼ୀଭୂତ ହୋଇଥିଲା ।

(ଗ) ଅସୁଥିଲେ କି ହେ ସ୍ୱପନରେ......ଦ ଦନେ ବସନ୍ତ ଦ ଦନେ ଯନେ ।

କଳିଙ୍ଗର ପ୍ରାଚୀନ ସମୃଦ୍ଧି ଓ ପ୍ରାଚୀନ ଗୌରବ ଉଭେଇ ଯାଇ-ଅଛି । ଭୁବନେଶ୍ୱରର ଲିଙ୍ଗରାଜଙ୍କ ତୁଙ୍ଗ ମନ୍ଦିର ଓ ଧଉଳିଗିରି ଉତ୍କଳର ସେହି ଗୌରବମୟ ଦିନ ଦେଖିଅଛନ୍ତି । ଆକାଶର ଚନ୍ଦ୍ର ସୂର୍ଯ୍ୟ ତାର ସାକ୍ଷୀ, ଆଧୁନିକ ଉତ୍କଳର ହୀନ ଦୀନ ଦଶା ଦେଖିଲେ ମନେ ହୁଏ ଯେପରି କି ସେ କାଳର ଉତ୍କଳୀୟମାନେ ସ୍ୱପ୍ନ ରାଜ୍ୟର ଲୋକ ଥିଲେ । ସେମାନେ ସ୍ୱପ୍ନରେ ଆସି ସ୍ୱପ୍ନରେ ଖେଳି ବୁଲି ନିଜ ଘରକୁ ଫେରିଗଲେ । ପ୍ରାଚୀନ ଉତ୍କଳୀୟମାନଙ୍କର ଆଶା ଆକାଂକ୍ଷା ବର୍ତ୍ତମାନ ବିଲୁପ୍ତ । ଏଣେ ସବୁ ଆଶା ଓ ଆକାଂକ୍ଷା ଏବେ ଇନ୍ଦ୍ରଜାଲ ମଧ୍ୟରେ ବିଲୟ ଲଭିବାର ପଦାର୍ଥ ହୋଇଛି । ସେହି ହେତୁରୁ ପ୍ରାଚୀନ ଉତ୍କଳର ଗୌରବ-ଗାଥା ବାସ୍ତବ ବିଷୟ ବୋଲି ବୋଧ ନ ହୋଇ ସ୍ୱପ୍ନ ପରି ବୋଧହୁଏ । ବିଶ୍ୱାସ କରି ହୁଏ ନାହିଁ ଯେ ଉତ୍କଳର ମହିମା ଏଣେ ଇନ୍ଦ୍ରଜାଲ ମଧ୍ୟରେ ଲୋପ ପାଇ ଯାଇଛି ।

(ଘ) କେତେ ହାତ ଧରି....ବଧି ହୋଇଲେ ବାସ ।

ପ୍ରାଚୀନ କଳିଙ୍ଗବାସୀ ଅନେକ ଜାତିର ଅଗ୍ରଣୀ ଥିଲେ । ଅନ୍ୟ-ମାନେ ତାଙ୍କର ଆଦର୍ଶକୁ ଅନୁସରଣ କରୁଥିଲେ । କଳିଙ୍ଗବାସୀ ସତ୍ୟ

ଓ ସତ୍‌ସାହସ ନିମନ୍ତେ ଖ୍ୟାତି ଲାଭ କରିଥିଲେ, କିନ୍ତୁ ବିଧାତାଙ୍କର କଟାକ୍ଷରୁ ସେହି କଳିଙ୍ଗବାସୀ ଆଜି ସମସ୍ତଙ୍କ ପଛରେ ପଡ଼ି ଅଛନ୍ତି । ତାଙ୍କର ସେ ମହତ୍ତ୍ୱ ନାହିଁ ।

(ଡ) ଲୁବ୍‌ଧ ମୃଗ ପରି...ପୂର୍ଣ୍ଣ କଲି ଏ ସଂସାର ।

କଳିଙ୍ଗ ଯୁଦ୍ଧରେ ଲୋକମାନଙ୍କର ଦୁଃଖ ଦେଖି ସମ୍ରାଟ୍ ଅଶୋକ ମର୍ମାହତ ହୋଇ ଚିନ୍ତା କରୁଅଛନ୍ତି, "ମୃଗ ତୃଷ୍ଣାରେ ଅନେକ ଦେଖି ସେଠାକୁ ଆକୃଷ୍ଟ ହୁଏ, ମାତ୍ର ପରିଣାମରେ ପ୍ରାଣ ହରାଏ । ସେହିପରି ମୁଁ ପାର୍ଥିବ ସୁଖରେ ଲିପ୍ତ ହୋଇ ନିଜର ଇହକାଳ ଓ ପରକାଳ ନଷ୍ଟ କରି-ଅଛି, ବୃଥା ଇନ୍ଦ୍ରିୟ ସୁଖରେ ଜଡ଼ିତ ରହିବା ଦ୍ୱାରା ମୋର ପାପର ମାତ୍ରା ଯଥେଷ୍ଟ ବୃଦ୍ଧି ପାଇଛି । ଜ୍ୱଳନ୍ତ ଅଗ୍ନିରେ ଶୁଷ୍କ କାଷ୍ଠ ପକାଇଲେ ଅଗ୍ନିର ପ୍ରଚଣ୍ଡ ତାପ ବଢ଼ିଥାଏ । ସେହିପରି ଇନ୍ଦ୍ରିୟ ସୁଖରେ ଦିନ ଯାପନ କରି ମୁଁ ପୃଥିବୀକୁ କେବଳ ଅଧିକ ପାପପୂର୍ଣ୍ଣ କରିଅଛି ।

---

## (୩୭) ଯୁଗାବତାର

### (କାନ୍ତକବି ଲକ୍ଷ୍ମୀକାନ୍ତ)

ମହାତ୍ମା ଗାନ୍ଧୀ ଏ ଯୁଗର ଶ୍ରେଷ୍ଠ ମାନବ । ସତ୍ୟ ଓ ଅହିଂସାର ଅବତାର ରୂପେ ମହାତ୍ମା ଗାନ୍ଧୀ ଆଜି ପୃଥିବୀରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଅଛନ୍ତି । ସତ୍ୟ ଓ ଅହିଂସା ବଳରେ କିପରି ଶତ୍ରୁକୁ ଜୟ କରିପାରି-ଥାରେ ତାହା ମହାତ୍ମା ଗାନ୍ଧୀଙ୍କର ଜୀବନରେ ପ୍ରମାଣିତ ହୋଇଅଛି । ଏହି ସ୍ତୁତି କବିତାରେ କବି ମହାତ୍ମା ଗାନ୍ଧୀଙ୍କ ପ୍ରବର୍ତ୍ତିତ ସତ୍ୟ ଓ ଅହିଂସା ନୀତିର ମହତ୍ତ୍ୱ ପ୍ରକଟିତ କରିଅଛନ୍ତି ।

**କଠିନ ଶବ୍ଦ—**

(ମୂ୧୪) ଦୁର୍ନୀତି (ଦୁଃ—ନୀ+ତି) ପାପ, ଅନ୍ୟାୟ ପନ୍ଥା— ସନ୍ଥ୍, ସାଧୁ ମହାପ୍ରାଣ (ମହାନ୍ ପ୍ରାଣ ଯାହାର) ଉଦାର ହୃଦୟ ମହା-

ଦୂତ, ଦାର୍ତ୍ତ (ଦୂତ୍ + ଅ, ଅ ସ୍ତ୍ରୀ) ସନ୍ଦେଶ, message, ପୂତ •(ପୂ + ତ) ପବିତ୍ର, ଐଶୀ (ଈଶ + ସମ୍ବନ୍ଧାର୍ଥରେ ଅ, ଈ ସ୍ତ୍ରୀ) ଈଶ୍ୱରସମ୍ବନ୍ଧୀ, ସବ୍ୟସାଚୀ—ଅର୍ଜ୍ଜୁନ, (ମୂଳ ୫) ଅଜେୟ [ଅ + ଜି—ଯ] ଯାହାକୁ ଜୟ କରି ହୁଏ ନାହିଁ, ସମ୍ମୋହନ—ବଶୀଭୂତକାରୀ, କଲ୍ୟାଣ—ମଙ୍ଗଳ, ମୂର୍ତ୍ତିମନ୍ତ—ମୂର୍ତ୍ତିମନ୍ତ, ଜାମ୍ବୁବନ୍ତ [ବୃଦ୍ଧିତ ପୁରୁଷ] ହିନ ଲୋକ, ହେୟ, ନିଃସଙ୍ଗ [ନିଃ—ସନ୍‌ଜ୍ + ଅ] ନିର୍ଲିପ୍ତ, ନିଃସ୍ୱାର୍ଥ, ପ୍ରତ୍ୟୟ [ପ୍ରତି—ଇ + ଅ] ବିଶ୍ୱାସ, ମୋହନ—ମହାତ୍ମା ଗାନ୍ଧୀଙ୍କର ନାମ ମୋହନ ଦାସ କରମଚାନ୍ଦ ଗାନ୍ଧୀ), ମୋହନ [ମୁହ୍ + ଅନ୍]—ମନୋହର, ଉଦ୍ଦୀପନ [ଉତ୍—ଦୀପ୍ + ଅନ୍] ଉତ୍ତେଜନା, ଉଚ୍ଛଳେ—ଉଚ୍ଛୁଳି, ମନ୍ଦ୍ର [ମନ୍ଦ୍ + ର] ଗମ୍ଭୀର, ବିଦ୍ୱନ୍ଦ୍ୱ—ପ୍ରତିଯୋଗିତା କରି, ଅଶନି—ବଜ୍ର, ଗହନ—ଜଟିଳ, ଦଣ୍ଡି ଦଣ୍ଡି—ପ୍ରତି ଦଣ୍ଡରେ, ସବୁଅଡ଼େ, ଦ୍ୟୁଲୋକ [ଦିବ୍ + ଲୋକ] ସ୍ୱର୍ଗ, ଭୂଲୋକ—ପୃଥିବୀ ।

**ଟିପ୍ପଣୀ**—ଅବତାର—ଦେବତାଙ୍କର ପୃଥିବୀକୁ ଆଗମନ ।
ଶ୍ରୀମଦ୍‌ଭଗବତ୍ ଗୀତାରେ ଲେଖା ଅଛି:—

ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ,
ଅଭ୍ୟୁତ୍‌ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍ ।
ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାଂ
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।

ଅର୍ଥାତ୍ ଯେତେବେଳେ ପୃଥିବୀରେ ଧର୍ମର ଗ୍ଲାନି ଓ ଅଧର୍ମର ଅଭ୍ୟୁଦୟ ହୁଏ ସେତେବେଳେ ଭଗବାନ ଅବତାର ଧାରଣ କରି ପୃଥିବୀକୁ ଆଗମନ କରନ୍ତି । ସାଧୁମାନଙ୍କର ଉଦ୍ଧାର, ପାପୀମାନଙ୍କର ବିନାଶ ଓ ଧର୍ମର ସଂସ୍ଥାପନା ଲାଗି ଭଗବାନ୍ ଯୁଗେ ଯୁଗେ ଅବତାର ଗ୍ରହଣ କରନ୍ତି ।

ସବ୍ୟସାଚୀ—ମଧ୍ୟମ ପାଣ୍ଡବ ଅର୍ଜ୍ଜୁନ । [ସବ୍ୟ + ସଚ୍ + ଇନ୍] ଯେ ସବ୍ୟ ଅର୍ଥାତ୍ ବାମହାତରେ ମଧ୍ୟ ଶର ନିକ୍ଷେପ କରି ପାରନ୍ତି ।

ପାଶୁପତ ଅସ୍ତ୍ର—ଅର୍ଜୁନଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ପଶୁପତି (ଶିବ) ତାଙ୍କୁ ଯେଉଁ ଅମୋଘ ଅସ୍ତ୍ର ଦେଇଥିଲେ ତାହାର ନାମ ପାଶୁପତ ଅସ୍ତ୍ର ।

ସମ୍ମୋହନ—ବିମୁଗ୍ଧ କରିବା, ମୋହ ଉତ୍ପାଦନ କରିବା । ସମ୍ମୋହନ ବାଣ ଦ୍ୱାରା ଶତ୍ରୁର ମୋହ ଜାତ ହୁଏ; ସେ ଅବଶ ହୋଇ ପଡ଼େ । ସେହିପରି ମହାତ୍ମା ଗାନ୍ଧୀ ସତ୍ୟ ଓ ଅହିଂସା ବାଣରେ ଶତ୍ରୁର ମଙ୍ଗଳ ସାଧନା କରି ତାକୁ ବଶୀଭୂତ କରୁଅଛନ୍ତି ।

ଭଗୀରଥ—ସୂର୍ଯ୍ୟବଂଶୀୟ ସଗର ରାଜାଙ୍କ ନାତି, ଦିଲୀପଙ୍କର ପୁଅ, କପିଳ ମୁନିଙ୍କ ଅଭିଶାପରୁ ସଗର ରାଜାଙ୍କ ପୁଅମାନେ ଭସ୍ମୀଭୂତ ହୋଇ ଯାଇଥିଲେ । ଭଗୀରଥ ଘୋର ତପସ୍ୟା ବଳରେ ଗଙ୍ଗାଙ୍କୁ ସନ୍ତୁଷ୍ଟ କରି ସ୍ୱର୍ଗରୁ ପୃଥିବୀକୁ ଆଣି ସଗରଙ୍କ ପୁତ୍ରମାନଙ୍କୁ ଉଦ୍ଧାର କରିଥିଲେ । ଭଗୀରଥ ଗଙ୍ଗାଙ୍କୁ ପୃଥିବୀକୁ ଆଣିଥିବାରୁ ଗଙ୍ଗାଙ୍କର ଅନ୍ୟ ନାମ ଭାଗୀରଥୀ ।

**ସାରକଥା**—ସାଧୁଜନମାନଙ୍କର ପରିତ୍ରାଣ ଲାଗି ମହାମାନବ ମହାତ୍ମା ଗାନ୍ଧୀ ଦେବ ଦୂତ ପରି ସ୍ୱର୍ଗୀୟ ବାର୍ତ୍ତା ଘେନି ପୃଥିବୀରେ ଅବତୀର୍ଣ୍ଣ ହୋଇ ଅଛନ୍ତି । ପୃଥିବୀରେ ଅଧର୍ମର ମାତ୍ରା ଅଧିକ ହେଲେ ଭଗବାନ୍ ଏହି ଭାରତ ଭୂମିରେ ଅବତାର ଗ୍ରହଣ କରି ପୃଥିବୀର ଭାର ଲାଘବ କରି ଥାନ୍ତି । ଅପୂର୍ବ ତପସ୍ୟା ଫଳରେ ଅର୍ଜୁନ ଶିବଙ୍କୁ ସନ୍ତୁଷ୍ଟ କରି ତାଙ୍କଠାରୁ ପାଶୁପତ ଅସ୍ତ୍ର ଲାଭ କରିଥିଲେ । ସେହି ଅସ୍ତ୍ରଦ୍ୱାରା ସେ ଦିବ୍ୟଶକ୍ତିର ଅଧିକାରୀ ହୋଇ ଶତ୍ରୁମାନଙ୍କୁ ଦମନ କରିଥିଲେ । ସେହିପରି ମହାତ୍ମା ଗାନ୍ଧୀ ଅସାଧ୍ୟ ସାଧନା ବଳରେ ଅହିଂସା ଅସ୍ତ୍ର ଲାଭ କରି ଶତ୍ରୁଙ୍କୁ ମଙ୍ଗଳ ବିଧାନ ଦ୍ୱାରା ସେମାନଙ୍କୁ ବଶୀଭୂତ କରୁଅଛନ୍ତି । ଭାରତର ଆଶା ଆକାଂକ୍ଷା, ଧର୍ମ, କର୍ମ, ଭୂତ ଭବିଷ୍ୟତ ବର୍ତ୍ତମାନ ସବୁ ଯେପରି ମହାତ୍ମା ଗାନ୍ଧୀଙ୍କ ଜୀବନରେ ମୂର୍ତ୍ତିମନ୍ତ ହୋଇଅଛନ୍ତି । କୌଣସି ବିପଦରେ ତାଙ୍କର ହୃଦୟ କାତର

ନୁହେଁ । ଭୟ କେବେ ହେଲେ ତାଙ୍କ ହୃଦୟରେ ସ୍ଥାନ ପାଇ ନାହିଁ । ନୈରାଶ୍ୟ ତାଙ୍କର କଳନାକୁ ସୁଦ୍ଧା ସ୍ପର୍ଶ କରି ପାରି ନାହିଁ । ଦୃଢ଼ ଈଶ୍ୱର ବିଶ୍ୱାସ ରଖି ସେ କର୍ତ୍ତବ୍ୟ ପଥରେ ଅଗ୍ରସର ହେଉ ଅଛନ୍ତି । ସେ ନିର୍ଲିପ୍ତ ଓ ନିଃସ୍ୱାର୍ଥପର ଭାବରେ କର୍ମ କରୁଥିବାରୁ କେବେ କୌଣସି କାର୍ଯ୍ୟରେ ବିଫଳ ହୋଇ ନାହାନ୍ତି । କାପୁରୁଷମାନେ କାର୍ଯ୍ୟରେ ବିଫଳ ହେବାର ଭୟ ପୋଷଣ କରିଥାନ୍ତି । ମହାତ୍ମା ଗାନ୍ଧୀ ବିଚିତ୍ର ମନ୍ତ୍ର ବଳରେ ସମଗ୍ର ଭାରତର କୋଟି କୋଟି ନରନାରୀଙ୍କ ହୃଦୟରେ ଉଦ୍ଦୀପନା ଦେଇଅଛନ୍ତି । ଭଗୀରଥଙ୍କ ତପସ୍ୟା ଫଳରେ ଯେପରି ମନ୍ଦାକିନୀ ସ୍ୱର୍ଗରୁ ଓହ୍ଲାଇ ଅସି ଏ ମର୍ତ୍ତ୍ୟ ଧାମକୁ ପ୍ଲାବିତ କରିଥିଲେ, ସେହିପରି ଅଦ୍ଭୁତ ସାଧନା ବଳରେ ମହାତ୍ମା ଗାନ୍ଧୀ ସମଗ୍ର ଭାରତକୁ ପ୍ରେମ ବନ୍ୟାରେ ଭସାଇ ଦେଇ ଅଛନ୍ତି । ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ ସମଗ୍ର ଭାରତଭୂମି ସ୍ୱାଧୀନତା-ମନ୍ତ୍ରରେ କମ୍ପି ଉଠୁଅଛି । ଆଦର୍ଶ ମାନବ ଜୀବନ ଯାପନ କରି ମହାତ୍ମା ଗାନ୍ଧୀ ସମଗ୍ର ମାନବଜାତିକୁ ମହାଶିକ୍ଷା ଦେଉଅଛନ୍ତି । ତାହା ଫଳରେ ଜଗତର ଚତୁର୍ଦ୍ଦିଗରେ ସତ୍ୟର ମହିମା ପ୍ରକଟିତ ହୋଇଅଛି । ସ୍ୱର୍ଗ ମର୍ତ୍ତ୍ୟ ଉଭୟ ସତ୍ୟ ଓ ଅହିଂସାର ପବିତ୍ର ଅମୃତରେ ସ୍ନାନ କରି ପରମ ଶାନ୍ତି ଲାଭ କରୁଅଛି । ମହାମାନବ ମହାତ୍ମା ଗାନ୍ଧୀ ଜଗତର ଗୁରୁ ସ୍ଥାନୀୟ । ଜଗତରେ ସତ୍ୟ ଓ ଅହିଂସାର ମନ୍ତ୍ର ପ୍ରଚାର କରି ସେ ଅକ୍ଷୟ ଯଶ ଅର୍ଜନ କରି ଅଛନ୍ତି ।

**ସରଳାର୍ଥ**—(କ) ବିପଦ ପାଇନି କରି···କାପୁରୁଷ ଭାଷା (ପୃ୯-୫) ଏଠାରେ ମହାତ୍ମା ଗାନ୍ଧୀଙ୍କର ଚରିତ୍ରର ବିଶେଷତ୍ୱ ଦେଖାଇ ଦିଆ ଯାଇଅଛି ।

ସାଧାରଣତଃ ଲୋକେ ବିପଦର ସମ୍ମୁଖୀନ ହେଲେ ହତୋତ୍ସାହ ହୋଇ ପଡ଼ନ୍ତି, ସେମାନଙ୍କର ମନର ବଳ ଭାଙ୍ଗିଯାଏ; ମାତ୍ର ମହାତ୍ମାଗାନ୍ଧୀ ବିପଦରେ ପଡ଼ିଲେ ମଧ୍ୟ ଦୃଢ଼ମନରେ କର୍ତ୍ତବ୍ୟ ପଥରେ ଅଗ୍ରସର ହୁଅନ୍ତି । ଅନେକେ ଭୟର ବଶବର୍ତ୍ତୀ ହୋଇ ଆତ୍ମବିଶ୍ୱାସ ହରାଇ ବସନ୍ତି; କିନ୍ତୁ

ମହାତ୍ମା ଗାନ୍ଧୀଙ୍କ ଜୀବନରେ ଭୟର ସ୍ଥାନ ନାହିଁ । ସେ ସର୍ବଦା ନିର୍ଭୟରେ କାର୍ଯ୍ୟ କରିଯାନ୍ତି, କୌଣସି ପ୍ରକାର ଭୟ ତାଙ୍କର ହୃଦୟକୁ ଅଭିଭୂତ କରିପାରେ ନାହିଁ । କୌଣସି କାର୍ଯ୍ୟରେ ସାମାନ୍ୟ ପ୍ରତିବନ୍ଧକ ପଡ଼ିଲେ ଲୋକେ ହତାଶ ହୋଇ ପଡ଼ନ୍ତି, ସେମାନଙ୍କର ଉତ୍ସାହ ଭାଙ୍ଗିଯାଏ, ମାତ୍ର ନୈରାଶ୍ୟ ମହାତ୍ମା ଗାନ୍ଧୀଙ୍କର ଚିନ୍ତାକୁ ସ୍ପର୍ଶ କରି ନାହିଁ । ସେ ସମ୍ପୂର୍ଣ୍ଣ ଆଶାବାଦୀ । ନୈରାଶ୍ୟ କଅଣ ସେ ଜାଣନ୍ତି ନାହିଁ । କେବଳ ଭୀରୁ କାପୁରୁଷମାନେ ବିଫଳ ହେବାର ଭୟ ପୋଷଣ କରିଥାନ୍ତି । ପ୍ରକୃତ ବୀର ପୁରୁଷ କେବେ କୌଣସି କର୍ମରେ ବିଫଳ ହୋଇ ନ ପାରେ । ସେ ସଫଳତା ଲାଭ ପର୍ଯ୍ୟନ୍ତ କାର୍ଯ୍ୟରେ ଲାଗିଥାଏ ।

(ଖ) ସବ୍ୟସାଚୀ କରିଅଛି......କଲ୍ୟାଣ ବିତରି (ପୃ ୮୪-୫)— ଅର୍ଜୁନ ଉଗ୍ର ତପସ୍ୟା ବଳରେ ପଶୁପତି ଶିବଙ୍କୁ ପ୍ରସନ୍ନ କରି ତାଙ୍କଠାରୁ ବରସ୍ୱରୂପ ପାଶୁପତ ଅସ୍ତ୍ର ଲାଭ କରିଥିଲେ । ସେହି ଅସ୍ତ୍ର ପ୍ରୟୋଗ କରି ସେ ଶତ୍ରୁମାନଙ୍କୁ ସମ୍ମୋହନ କରି ପାରୁଥିଲେ; ଶତ୍ରୁମାନେ ଅବଶ ହୋଇ ପଡ଼ୁଥିଲେ । ସେହିପରି ମହାତ୍ମା ଗାନ୍ଧୀ କଠୋର ସାଧନା ଫଳରେ ଯେଉଁ ଅହିଂସାରୂପକ ଅସ୍ତ୍ର ଲାଭ କରିଅଛନ୍ତି ତାହାର ଶକ୍ତି ଅସୀମ । ଏହି ଅସ୍ତ୍ର ଶତ୍ରୁଠାରେ ପ୍ରତିହିଂସା ପରିବର୍ତ୍ତେ ତାର ମଙ୍ଗଳ ସାଧନା କରି ତାକୁ ବଶୀଭୂତ କରିପକାଏ ।

---

## (୩୮) ଗୋପ-ପ୍ରୟାଣ

### (ଠାକୁର ମାୟାଧର ମାନସିଂହ)

ଉତ୍କଳମଣି ଗୋପବନ୍ଧୁଙ୍କର ସଂକ୍ଷିପ୍ତ ପରିଚୟ ଏହି ପୁସ୍ତକରେ ଦିଆ ଯାଇଅଛି । ତାଙ୍କର ମହା ପ୍ରୟାଣକୁ ଲକ୍ଷ୍ୟକରି ଏହି କବିତାଟି ଲେଖାଯାଇଅଛି ।

**କଠିନ ଶବ୍ଦ**—( ପୃ ୮୭ ) ମହାପ୍ରୟାଣ—ମହାଯାତ୍ରା, ମୃତ୍ୟୁ; ଅନୀକିନୀ—ସେନା; ପ୍ରମ୍ଳିତେ—ପ୍ରମ୍ଳାନ ହୃଦୟରେ, ପତାକା ନୁଆଁଇବା

ଅଗ୍ରଜନ୍ମର ଲକ୍ଷଣ, ହୃତ୍-ହୃଦୟ, ଅଧର—ଓଷ୍ଠ, ବିରାଟ (ବି-ରାଜ୍+କ୍ୱିପ୍ ବିଶାଳ, (ପୃ୮୭) ନାଗରିକ—(ନଗର+ଇକ) ନଗରବାସୀ, ଅଶ୍ରୁ—ଲୋତକ, ଚରଣ ନଗ୍ନକରି—ପାଦରେ ଯୋତା ଆଦ ନ ପିନ୍ଧି, ସ୍ୱର୍ଗତ—ମୃତ, ଶୁଭଗ—(ଶୁଭ—ଗମ୍+ଅ) ଭାଗ୍ୟବାନ୍, ସୌଦାଗର—ବଡ଼ ବ୍ୟବସାୟୀ, ଋତ୍ୱିକ—ବେଦବିଦ୍ ବ୍ରାହ୍ମଣ, ଯକ୍ଷୀ—ଯକ୍ଷିଣୀ, ଜନତା ଜନ—ବାହୁଲ୍ୟାର୍ଥରେ ତା) ଜନସାଧାରଣ, ଜନପଦ—ଗ୍ରାମ, ଗବାକ୍ଷରେ (ଗୋ+ଅକ୍ଷ) ଝରକା, ଗବାକ୍ଷପୂଡ଼ା—ଝରକାବାଟେ, ସନାତନୀ—ଯେ ସନାତନ ହିନ୍ଦୁ ଧର୍ମ ଉପରେ ବିଶ୍ୱାସ କରନ୍ତି, କ୍ଷୁଦ୍ରତା (କ୍ଷୁଦ୍ର+ଭାବାର୍ଥରେ ତା) ନୀଚତା, (ପୃ୮୮) ଅନ୍ନ (ଅଦ୍—ତ) ଖାଦ୍ୟ, ଜ୍ୟୋତ୍ସ୍ନା—ଚନ୍ଦ୍ର-କିରଣ ଯେପରି ହୃଦୟକୁ ଶୀତଳ କରି ଶାନ୍ତି ଦିଏ, ଗୋପବନ୍ଧୁ ସେହିପରି ଦେଢ଼କୋଟି ଓଡ଼ିଆଙ୍କ ହୃଦୟରେ ଶାନ୍ତି ଦେଉଥିଲେ, ନିଖିଳ—ସମଗ୍ର, ନିର୍ବିଘ୍ନରେ—କିଛି ବିଘ୍ନ ନ କରି, ବିଘ୍ନର ହାନି ଭାବରେ, ରୁଦ୍ଧ (ରୁଧ୍+ତ) ବନ୍ଦ, କେଦାର—କିଆରୀ, ଅର୍ଚ୍ଚନା (ଅର୍ଚ୍ଚ+ଅନ, ଆ ସ୍ତ୍ରୀ) ପୂଜା, (ପୃ୯୦) ପ୍ରତୀକ୍ଷା (ପ୍ରତି—ଈକ୍ଷ+ଅ, ଆ-ସ୍ତ୍ରୀ) ପଣ, ଗୃହଅଭିସାରୀ—ଘରକୁ ଯିବାକୁ ଇଚ୍ଛୁକ । ଅଭିସାର—ପ୍ରିୟଜନ ସହିତ ମିଳନ ପାଇଁ ସଙ୍କେତ ସ୍ଥାନକୁ ଯିବା ।

ସମୁଚିତ—ବିହିତ, ଉପଯୁକ୍ତ, ପାଷାଣ—ପଥର (ହୃଦୟହୀନ), (ପୃ୯୧) ଇଙ୍ଗିତ—ସଙ୍କେତ, ଇସାରା, ଅହରହ—ସର୍ବଦା, ମୂଢ଼—ଅଧମ, ମୂର୍ଖ; ବୁଭୁକ୍ଷୁ (ଭୁଜ୍+ସନନ୍ତରେ ଉ) ଭୋକୀ, (ପୃ୯୨) ପ୍ରତିହାରୀ (ପ୍ରତି—ହୃ+ଇନ୍) ଦ୍ୱାରରକ୍ଷକ, ଶ୍ରେଷ୍ଠ (ପ୍ରଶସ୍ୟ+ଇଷ୍ଠ) ପ୍ରଧାନ, ପୂଜାହାରୀ (ପୂଜା—ଆ—ହୃ+ଇନ୍) ସେବକ, ପୂଜକ, ମମତା, (ମମ+ତା) ସ୍ନେହ, ରତ୍ନବେଦୀ—ଜଗନ୍ନାଥଙ୍କର ସିଂହାସନ, ଆଶିଷ—ଆଶୀର୍ବାଦ (ପୃ୯୩) ପତିତପାବନ—ଅଧମ ଉଦ୍ଧାରଣ ଜଗନ୍ନାଥ, ବାନା—ପତାକା, ଭାସ୍ୱର (ଭାସ୍+ୱର) ତେଜୀୟାନ୍, ଉଜ୍ଜ୍ୱଳ, ବାଗ୍ମୀ (ବାଚ୍+ମିନ୍) ବକ୍ତା, ଦୀର୍ଘକାଳ—ବିରାଟସମୟ, ଭ୍ରଷ୍ଟ (ଭ୍ରନ୍ସ୍+ତ) ସ୍ଖଳିତ ।

**ସାରକଥା**—ଆଜି ଉତ୍କଳମଣି ଗୋପବନ୍ଧୁଙ୍କର ମହାପ୍ରୟାଣରେ ଓଡ଼ିଆ ଜାତିର ଗର୍ବ ଭଙ୍ଗ ଯାଇଅଛି । ଆଜ ପ୍ରତି ଓଡ଼ିଆର ହୃଦୟ ଅନ୍ଧକାରମୟ । ସମସ୍ତଙ୍କ ମୁଖରେ ତାଙ୍କର ନାମ ଶୁଣା ଯାଉଅଛି । ଘରେ ଘରେ କ୍ରନ୍ଦନଧ୍ୱନି ଉଠୁଅଛି ।

ଆଜି ନଗରବାସୀ ମିଳିତ ହୋଇ ଜାତିର ନେତାଙ୍କୁ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରନ୍ତୁ । ରାଜା, ପ୍ରଜା, ଧନୀ, ଦରିଦ୍ର, ବ୍ରାହ୍ମଣ, କ୍ଷତ୍ରିୟ ସମସ୍ତେ ମିଳି ତାଙ୍କ ଶବର ଅନୁଗମନ କରନ୍ତୁ । ବ୍ରାହ୍ମଣମାନେ ମନ୍ତ୍ରପାଠ କରନ୍ତୁ, ଜନସାଧାରଣ ଖୋଳ କରତାଳ ବଜାନ୍ତୁ । କୁଳବଧୂମାନେ ଦ୍ୱାରଦେଶରେ ଠିଆ ହୋଇ ତାଙ୍କ ଉଦ୍ଦେଶ୍ୟରେ ଲୋତକ ବିସର୍ଜନ କରନ୍ତୁ । ଗୋପବନ୍ଧୁ ଓଡ଼ିଆ ଜାତିର ଶ୍ରେଷ୍ଠ ହାର ସ୍ୱରୂପ ଥିଲେ । କି ହିନ୍ଦୁ, କି ମୁସଲମାନ କି ଖ୍ରୀଷ୍ଟିଆନ୍ ସମସ୍ତେ ତାଙ୍କୁ ସମ୍ମାନ ପ୍ରଦର୍ଶନ କରନ୍ତୁ । ସେ ଜାତି ଧର୍ମ ନିର୍ବିଶେଷରେ ସମସ୍ତଙ୍କର ସେବା କରି ଯାଇଅଛନ୍ତି । ଭୋକିଲାକୁ ଅନ୍ନ ଦେବା ତାଙ୍କର ଜୀବନର ପ୍ରଧାନ ବ୍ରତ ଥିଲା । ପରର ଦୁଃଖ ଦେଖିଲାକ୍ଷଣି ତାଙ୍କର ହୃଦୟ ତରଳି ଯାଉଥିଲା, ଚକ୍ଷୁରୁ ଲୋତକଧାରା ବହି ଯାଉଥିଲା । ତାଙ୍କ ଯୋଗେ ଓଡ଼ିଶାର ମାଟି ପବିତ୍ର ହୋଇଅଛି । ଓଡ଼ିଶାର ଦେଢ଼କୋଟି ନରନାରୀ ତାଙ୍କ ଉଦ୍ଦେଶ୍ୟରେ ପ୍ରଣିପାତ କରନ୍ତୁ ।

ଗୋପବନ୍ଧୁ ଓଡ଼ିଆ ଜାତିର ଋଷି ଥିଲେ । ନିଷ୍ଠୁର ମୃତ୍ୟୁ ତାଙ୍କୁ ନେଇଯାଇ ଦେଢ଼କୋଟି ଲୋକଙ୍କୁ ଦୀନହୀନ ନିଃସ୍ୱ କରିପକାଇଛି । ହାୟ, ମୃତ୍ୟୁ କି ଅବିବେକୀ, ଅବିଚାରୀ ।

ଗୋପବନ୍ଧୁ ଓଡ଼ିଆ ଜାତିର ପ୍ରିୟ ଥିଲେ । ଦରିଦ୍ର ବୃନ୍ଦର ସେ ବନ୍ଧୁ ଥିଲେ । ତାଙ୍କ ବିହୁନରେ ଆଜି ସମସ୍ତେ ମ୍ରିୟମାଣ । ସେ ଓଡ଼ିଆ ଜାତିର ପ୍ରଧାନ ବୀର ଥିଲେ । ତାଙ୍କର ଆଶା ଆକାଂକ୍ଷା ପୂର୍ଣ୍ଣ ନ ହେଉଣୁ ସେ ଚାଲିଗଲେ । ଓଡ଼ିଆର ଦୁଃଖ ଦାରିଦ୍ର୍ୟ ଦୂର ହୋଇ ନାହିଁ । ଓଡ଼ିଶାର ଘରେ ଘରେ ଅନାଟନ ଅଛି । ଗୋପବନ୍ଧୁ ଏ ଦାରିଦ୍ର୍ୟର, ଏ ଅଭାବର

ମୁଣ୍ଡିଆର ନ ଜଣି ଗୁଲିଗଲେ କପରି ? ଓଡ଼ିଆମାନେ ଆଜ ସବୁଠାରେ ହୀନ ହୀନ, ଲାଞ୍ଛନାର ପାତ୍ର । କିଏ ଆଉ ଓଡ଼ିଶାର ସମ୍ମାନ ଫେରାଇ ଆଣିବ ? ପରର ଦୁଃଖ ଦେଖିଲେ ଯାହାର ଆଖିରୁ ଲୁହ ବହି ଯାଉଥିଲା ସେ କପରି ଆଜ ଦେଢ଼କୋଟି ଲୋକଙ୍କର ଲୋତକଧାରା ଦେଖି ନିଶ୍ଚିନ୍ତ ହୋଇ ରହି ଅଛନ୍ତି । ତାଙ୍କ ବିନା ଆଉ କିଏ ଏ ଦେଢ଼କୋଟି ଓଡ଼ିଆଙ୍କର ନେତୃତ୍ୱ ନେବ ? ଆଜ ଜଣକର ମୃତ୍ୟୁରେ ସମଗ୍ର ଓଡ଼ିଆ ଜାତି ମୁମୂର୍ଷୁ ହୋଇ ପଡ଼ିଛି ।

ଗୋପବନ୍ଧୁ ପ୍ରଧାନ ଭକ୍ତ ଥିଲେ । ଲୋକେ ଦେବତାଙ୍କ ନିକଟରେ ନିଜର ସୁଖ ପ୍ରାର୍ଥନା କରନ୍ତି ; ମାତ୍ର ଗୋପବନ୍ଧୁ ନିଜ କଥା ନ ବିଗ୍ଭରି ପରର ସୁଖପାଇଁ ଦିନରାତି ଭଗବାନଙ୍କୁ ଡାକୁଥିଲେ । ଯାହାର ପ୍ରାଣ ନିରନ୍ତର ପର ଦୁଃଖରେ କାନ୍ଦେ, ପରର ସୁଖପାଇଁ ଯେ ବ୍ୟାକୁଳ, ତାହାଠାରୁ ବଳି ଭକ୍ତ ଆଉ କିଏ ଅଛି ? ଆଜ ଗୋପବନ୍ଧୁଙ୍କର ଆତ୍ମା ରତ୍ନବେଦୀରେ ଜଗନ୍ନାଥଙ୍କ ପାଦପଦ୍ମରେ ମିଶିଯିବ । ସେହି ରତ୍ନବେଦୀ ତଳୁ ତାଙ୍କର ଆଖିଉଧାରା ଅମୃତ ପରି ବହିଯାଇ ଉତ୍କଳକୁ ପ୍ଳାବିତ କରିବ ।

ଗୋପବନ୍ଧୁ ଋଷିପ୍ରାଣ ଥିଲେ । ସେ ଯେପରି କର୍ମୀ, ସେହିପରି ବକ୍ତା ଥିଲେ । ତାଙ୍କଲାଗି ଓଡ଼ିଶା ଦେଶ ଧନ୍ୟ ହୋଇଅଛି । ସେହି ହେତୁରୁ ତାଙ୍କର ବିୟୋଗରେ ସମଗ୍ର ଓଡ଼ିଆ ଜାତି ବିଳାପ କରୁଅଛି । ମାତ୍ର ଗୋପବନ୍ଧୁ ମୃତ୍ୟୁଞ୍ଜୟ । ତାଙ୍କର ନାମ ଉତ୍କଳ ବକ୍ଷରୁ ଲୋପ ପାଇବ ନାହିଁ । ମୃତ୍ୟୁଦ୍ୱାରା ଯେପରି ସେ ଗୋଟିଏ ଗୋପବନ୍ଧୁ କୋଟିଏ ଗୋପବନ୍ଧୁରେ ପରିଣତ ହୋଇ ସମସ୍ତଙ୍କ ହୃଦୟରେ ସ୍ଥାନ ଅଧିକାର କରିଅଛନ୍ତି । ସେ ଲକ୍ଷ୍ୟଭ୍ରଷ୍ଟ ଦେବତା ପରି ପୃଥିବୀକୁ ଆସି ବାକ୍ୟରେ ତଥା କାର୍ଯ୍ୟରେ ଅମୃତ ବୃଷ୍ଟି କରି ଯାଇଅଛନ୍ତି ।

**ଟିପ୍ପଣୀ—ବାଇଶିପାହାଚ**—ପୁରୀମନ୍ଦିରର ସିଂହଦ୍ୱାରଠାରୁ ମନ୍ଦିରକୁ ଯିବା ପାଇଁ ବାଇଶଟି ପାହାଚ ଅତିକ୍ରମ କରିବାକୁ ହୁଏ । ହିନ୍ଦୁମାନେ ଏହି ପାହାଚକୁ ଅତି ପବିତ୍ର ମନେ କରନ୍ତି ।

**ପତିତପାବନ**—ପତିତ ବା ପାପୀମାନଙ୍କୁ ତ୍ରାଣ କରନ୍ତି ବୋଲି ଜଗନ୍ନାଥଙ୍କର ଅନ୍ୟ ନାମ ପତିତପାବନ । ଓଡ଼ିଶା ଏହି ପତିତପାବନ ଜଗନ୍ନାଥଙ୍କ ନିମନ୍ତେ ଦେଶ ବିଦେଶରେ ଖ୍ୟାତ ।

ଦେଶ ଦେଶ ବୁଲି......ଲୁହିଁଲି ନାହିଁ ।

ବନ୍ୟା-ମରୁଡ଼ି-ଯୋଗେ ଓଡ଼ିଶାରେ ବାରମ୍ବାର ଖାଦ୍ୟାଭାବ ଘଟେ । ଗୋପବନ୍ଧୁ ଲୋକମାନଙ୍କୁ ସାହାଯ୍ୟ ଦେବା ପାଇଁ ଭାରତର ନାନା ସ୍ଥାନରୁ ଅର୍ଥ ସଂଗ୍ରହ କରି ଆଣୁଥିଲେ । ମହାତ୍ମା ଗାନ୍ଧି, ଅମୃତଲାଲ ଠକ୍କର ପ୍ରଭୃତି ଓଡ଼ିଶା ପାଇଁ ଯଥେଷ୍ଟ ସାହାଯ୍ୟ କରିଅଛନ୍ତି । ସେ ସବୁ ସାହାଯ୍ୟର ମୂଳରେ ଗୋପବନ୍ଧୁ ଥିଲେ ।

**ସରଳାର୍ଥ:**—(କ) ତଥାପି ତୁମର ମୃତ୍ୟୁ ଅଛି କି......ଲକ୍ଷ କୋଟିଏ ହୋଇ ।

ଗୋପବନ୍ଧୁଙ୍କର ମହାପ୍ରୟାଣରେ ଉତ୍କଳବାସୀ ବିଳାପ କରୁଅଛନ୍ତି । ମାତ୍ର ଗୋପବନ୍ଧୁ ନିଜର ନିଃସ୍ୱାର୍ଥ କାର୍ଯ୍ୟକଳାପ ଦ୍ୱାରା ଉତ୍କଳରେ ଅମର ହୋଇ ରହିବେ । ସେ ମୃତ୍ୟୁକୁ ଜୟ କରିଅଛନ୍ତି । ଗୋପବନ୍ଧୁଙ୍କର ନଶ୍ୱର ଶରୀର ଧ୍ୱଂସ ହୋଇ ଯାଇଅଛି ସତ, ମାତ୍ର ତାଙ୍କର ଅମର ଜୀବନ କୋଟି କୋଟି ନରନାରୀଙ୍କର ହୃଦୟକୁ ପ୍ରଭାବିତ କରୁଥିବ । ଗୋପବନ୍ଧୁ ଜଣେ ମାତ୍ର ମନୁଷ୍ୟ ଥିଲେ । ମୃତ୍ୟୁପରେ ସେ ଯେପରି କି କୋଟିଏ ଗୋପବନ୍ଧୁ ରୂପେ ଜନ୍ମଗ୍ରହଣ କରି ପ୍ରତ୍ୟେକ ଲୋକର ହୃଦୟରେ ସ୍ଥାନ ଅଧିକାର କରିଅଛନ୍ତି । ପ୍ରତ୍ୟେକ ଲୋକ ଗୋପବନ୍ଧୁଙ୍କର ପବିତ୍ର ସ୍ମୃତିକୁ ହୃଦୟରେ ଧାରଣ କରିଅଛି । ଅତଏବ ଗୋପବନ୍ଧୁ ମୃତ୍ୟୁଞ୍ଜୟ ।

(ଖ) ଧାର୍ମିକ ସବୁ ନିଜ ସୁଖ....ଦେବତା ଯାଚି ଜାଗି ।

ଯେଉଁମାନେ ସାଧାରଣତଃ ଭକ୍ତ ବୋଲି ଜନସମାଜରେ ପରିଚିତ ସେମାନେ ନିଜର ସୁଖ ସମ୍ପଦ ଲାଗି ଦେବତାଙ୍କ ନିକଟରେ ପ୍ରାର୍ଥନା କରନ୍ତି; ସେହି ଉଦ୍ଦେଶ୍ୟରେ ଦେବତାଙ୍କର ପୂଜା ଆରାଧନା କରନ୍ତି । ମାତ୍ର ଗୋପବନ୍ଧୁ ଏ ଶ୍ରେଣୀର ଭକ୍ତ ନ ଥିଲେ । ସେ ଦିବାରାତ୍ର ଦେବତାଙ୍କ ନିକଟରେ ପରର ସୁଖ ସ୍ୱାଚ୍ଛନ୍ଦ୍ୟପାଇଁ ପ୍ରାର୍ଥନା କରୁଥିଲେ । ସେ ନିଜର

ସ୍ୱାର୍ଥ ନ ଖୋଜି ପରର ସୁଖ ପାଇଁ ବ୍ୟାକୁଳ ହୋଇ ଦେବତାଙ୍କୁ ପ୍ରାର୍ଥନା କରେ, ସେ ସାଧାରଣ ଭକ୍ତ ନୁହେଁ, ସେ ଭକ୍ତମାନଙ୍କର ରଜା । ଗୋପବନ୍ଧୁ ଏହିପରି ଭକ୍ତ ଥିଲେ ।

---

## (୪୦) କାଳିଜାଈ

### ( ପଣ୍ଡିତ ଗୋଦାବରୀଶ ମିଶ୍ର )

**କବି ପରିଚୟ:—**ପଣ୍ଡିତ ଗୋଦାବରୀଶ ମିଶ୍ର ବାଣପୁର ନିବାସୀ । କୃତିତ୍ୱର ସହିତ ଏମ, ଏ ଓ ବି, ଟି ପାଶ୍ କରି ସେ କିଛିକାଳ ସତ୍ୟବାଦୀ ଓ ପରେ ଚକ୍ରଧରପୁର ହାଇସ୍କୁଲରେ ଶିକ୍ଷକତା କରିଥିଲେ । ଶିକ୍ଷକତା ତ୍ୟାଗ କରି ସେ ରାଜନୀତି କ୍ଷେତ୍ରରେ ପ୍ରବେଶ କରିଥିଲେ । ସେ ଦୀର୍ଘକାଳ ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାର ସଭ୍ୟ ଥିଲେ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ବ୍ୟବସ୍ଥାପକ ସଭାରେ ସେ କଂଗ୍ରେସ ପକ୍ଷରୁ ସଭ୍ୟ ହୋଇଥିଲେ । କଂଗ୍ରେସ ମନ୍ତ୍ରିତ୍ୱ ତ୍ୟାଗ କରିବାରୁ ସେ କଂଗ୍ରେସରୁ ଅଲଗା ହୋଇ ମନ୍ତ୍ରୀପରିଷଦରେ ଶିକ୍ଷା ଓ ରାଜସ୍ୱ ବିଭାଗର ମନ୍ତ୍ରୀରୂପେ ଯୋଗ ଦେଇଥିଲେ । ବର୍ତ୍ତମାନ ସେ ରାଜନୀତିଠାରୁ ପ୍ରାୟ ଦୂରରେ ରହିଛନ୍ତି । ସେ କବିତା, ନାଟକ, ଗଳ୍ପ, ଉପନ୍ୟାସ ପ୍ରଭୃତି ଲେଖି ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି କରିଅଛନ୍ତି ଓ କରୁଅଛନ୍ତି । 'କାଳିଜାଈ' କବିତାର ସରଳ ଗ୍ରାମ୍ୟଭାଷା ଉପଭୋଗ୍ୟ ।

**କାଳିଜାଈ—**ଚିଲିକା ମଝିରେ କାଳିଜାଈ ନାମରେ ଗୋଟିଏ ପାହାଡ଼ ଅଛି । ଏହା ପଶ୍ଚିମ କୂଳଠାରୁ ପ୍ରାୟ ୮ ମାଇଲ ଦୂରରେ ଅବସ୍ଥିତ । ଏହି ପାହାଡ଼ରେ ଗୋଟିଏ କ୍ଷୁଦ୍ର ମନ୍ଦିର ଅଛି । ଉକ୍ତ ମନ୍ଦିରରେ କାଳିଜାଈ ଠାକୁରାଣୀ ପ୍ରତିଷ୍ଠିତ । ମନ୍ଦିର ନିକଟରେ ପାରିକୁଦ ରାଜା ମହୋଦୟଙ୍କ ନିର୍ମିତ ଗୋଟିଏ କୋଠାଘର ଅଛି । ନାଉରିମାନଙ୍କର ବିଶ୍ୱାସ

କାଳଜାଇଙ୍କର ଦୟା ହେଲେ ଚାଲିବାରେ ସେମାନଙ୍କୁ କିଛି ଆପଦ ବିପଦ ଘଟିବ ନାହିଁ । ଯେଉଁମାନେ କାଳଜାଇଙ୍କୁ ଚେଳ ବା କୁକୁଡ଼ା ଯାଚିଥାନ୍ତି ସେମାନେ ସେ ଜୀବକୁ ବଧ ନ କରି ସେହିଠାରେ ଛାଡ଼ିଦେଇ ଯାଆନ୍ତି । ଜୀବଟି କିଛି ଖାଇବାକୁ ନ ପାଇ କିଛିଦିନ ପରେ ମରିଯାଏ । କାଳଜାଇଙ୍କର ଉତ୍ପତ୍ତି ବିଷୟ ଏହି ପ୍ରକାରରେ ବର୍ଣ୍ଣିତ ହୋଇଅଛି ।

ଯାତକଥା—ଜାଇ ବାପା ମାଆଙ୍କର ଆଦରର ଝିଅ । ପାରିକୁଦରେ ତାର ବିବାହ ହୋଇଥିଲା । ବିଭାଘର ପରେ ଶାଶୁଘରେ ଛାଡ଼ିଦେବା ପାଇଁ ବାପା ଜାଇକୁ ଡଙ୍ଗା ବାହାରିଲେ । ଜନ୍ମସ୍ଥାନ ଛାଡ଼ି ଯିବାରୁ ଜାଇମନରେ ବଡ଼ ଦୁଃଖ ହେଲା । ପାରିକୁଦ ଯିବା ପାଇଁ ଜାଇ ବାପାଙ୍କ ସାଥିରେ ନାଆରେ ବସିଲା । ନାଉରୀ ନାଆ ଛାଡ଼ ଦେଲା । ଗୁଇଁ ଗୁଇଁ ଖରି ମାରୁଥାଏ । ମାମୁ ଉଣଜା ପାହାଡ଼ ଆଡ଼ୁ ସୁଲୁସୁଲିଆ ପବନ ବହୁଥାଏ । ଦିନ ଦଶ ଘଡ଼ି ହେଲାଣି । କାଳେ ବେଳ ନ ପାଇବ ବୋଲି ନାଉରୀ ଯଥାଶକ୍ତି କାତ ମାରୁଥାଏ । ଏଣେ ଜାଇର ମନ ଦୁଃଖରେ ପୂରିଥାଏ । ଗାଁଆର ସାଙ୍ଗସାଥି, ମାଆ ଭଉଣୀଙ୍କ କଥା ତାର ମନେ ପଡୁଥାଏ । ତାର ଘର ପାଖ ବଣ ପାହାଡ଼କୁ ଆଉ ଥରେ ଦେଖି ଆସିବାକୁ ମନ ହେଉଥାଏ । ସେ କେତେ ଖାଲଆରେ ଗାଧୋଇ ଥିଲା । ବାଣପୁରରେ ଭଗବତୀ ଠାକୁରାଣୀଙ୍କୁ କେତେଥର ଦର୍ଶନ କରୁଥିଲା । ଆଉ ସେ ସବୁ କରିପାରିବ ନାହିଁ ବୋଲି ତା ମନରେ କୋହ ହେଲା । ଘଣ୍ଟଶିଳା ପାହାଡ଼ କଥା ତା ମନେ ପଡ଼ି ଯାଉଥାଏ । ଅଳ୍ପ ସମୟ ପରେ ନାଆ ଚଢ଼େଇ ହୁଗା ପାହାଡ଼ ପାଖେ ପହଞ୍ଚିଲା । ସେତେବେଳକୁ ଘଣ୍ଟଶିଳା ଆଉ ଦେଖାଯାଉ ନ ଥାଏ । କିଛି ସମୟ ପରେ ନାଆ ଚିଲିକା ମଝିରେ ହେଲା । ଜାଇ ମନ ଦୁଃଖରେ ବାଦଲ ଲୁହରେ କାନ ଓଦା କରି ଦେଉଥାଏ । ବାପ ମାଆଙ୍କୁ ଛାଡ଼ି କିପରି ସେ କେଉଁ ଦୂର ଦେଶରେ ରହିବ, ଏପରି ଭାବ ଜାଇର ଚିତ୍ତ ବିଭୋର ହୋଇ ଯାଉଥାଏ । ତା ପାଟିରୁ କଥା ବାହାରୁ ନ ଥାଏ । ପାରିକୁଦ ଗଡ଼ ପାଖ ହେଲାଣି କହି ବାପ ଜାଇକୁ ବୋଧ କରୁଥାଏ । ଜାଇ କେବେ ନାଆରେ ବସି ନ ଥିଲା । ମୂର୍ଚ୍ଛା ହୋଇ ଶାଶୁ ଘରକୁ ଯାଉଛି । ସେଥିପାଇଁ ତାର

ବାଟ ଭଲ କରି ନାଆ ବୁହାଇବାକୁ ନାଉରୀକୁ ବାରମ୍ବାର କହୁଥାଆନ୍ତି । ନାଉରୀ କାତ ମାରୁଥାଏ, ସୁଲୁସୁଲୁ ପବନ ବହୁଥାଏ, ନାଆଟି ଅସି ମଝି ଗଣ୍ଡରେ ପହଞ୍ଚିବାରୁ ନାଉରୀ କାତ ଛାଡ଼ି ଦେଇ ଛିଡ଼ା ହେଲା । ଏ ସମୟରେ କାହିଁ କେଉଁ କଳାମେଘ ଉଠାଇ ଅସିଲା । ସୂର୍ଯ୍ୟ ଦେଖାଗଲେ ନାହିଁ । ଜଳଅନାସୀ ଅନ୍ତୁ ମେଘ ପବନ ମାଡ଼ ଅସିଲା । ସେତେବେଳକୁ ନାଆ ମଝିଗଣ୍ଡରେ । ନାଉରୀ ନାଆକୁ ଅଯତ୍ତ କରିପାରିଲା ନାହିଁ । ଏକା ପବନକେ ନାଆଟି ପାହାଡ଼ରେ ପିଟି ହୋଇ ଚୂନା ହୋଇଗଲା । କିଛି ସମୟ ପରେ ମେଘ ଗୁଡ଼ିଗଲା । ପବନ ଧୀର ହେଲା ।

ଝିଅ କାହିଁ ଗଲା ବାପ ପଚାରିବାରୁ ନାଉରୀର ତୁଣ୍ଡ ଫିଟିଲା ନାହିଁ । ସବୁ ପୂର୍ବପରି ଅଛି, ଚଢ଼େଇମାନେ ଉଡ଼ୁଛନ୍ତି, ଚିଲିକା ଉପରେ ଲହରୀ ଖେଳୁଛି । ମାତ୍ର ଝିଅ ନାହିଁ । ବାପ ଘରକୁ ଫେରି ଅସି ଝିଅର ହେଉଛି କିଛି କହିପାରିଲେ ନାହିଁ ।

ଏ କେତେଶହ ବର୍ଷ ତଳର କଥା, ମାତ୍ର ଲୋକଙ୍କର ବିଶ୍ୱାସ ଯେ ଝିଅ ଜୀଉ ରହିଛି । ବାଲୁଗାଁଠାରୁ ନାଆରେ ପାରିକୁଦ ଗଡ଼ ଗଲାବେଳେ ପାହାଡ଼ ପାଖରେ ମଣିଷ ତୁଣ୍ଡ ଶୁଣାଯାଏ । ଚିଲିକାରେ ଆପଦ ବିପଦ ହେଲାବେଳେ ସେ ଅସି ସାହା ହେଲାପରି ଜଣାଯାଏ । ନାଉରୀମାନେ ସେ ବାଟ ଦେଇ ଗଲାବେଳେ ନିଜର ଶୁଭ ମନାସି ତାକୁ ଜୁହାର କରନ୍ତି । କାଳକ୍ରମେ ଲୋକେ ସେ ପାହାଡ଼ରେ ଗୋଟିଏ ଦେଉଳ ତୋଳିଲେ । ଲୋକେ କହନ୍ତି, "ସଞ୍ଜବେଳେ ଗୁରୁଆଡ଼ ନିଶୁନ ହେଲେ ଝିଅ ସେ ପାହାଡ଼ରେ ବୁଲେ । ତାର ମୁହଁ ଶୁଖି ଯାଇଥାଏ । ଆଖିରୁ ଲୁହ ବୋହୁ ଥାଏ । କାଳିଜାଇ ବଡ଼ ପ୍ରତ୍ୟକ୍ଷ ଦେବତା । ସେ ପାହାଡ଼ 'କାଳିଜାଇ' ବୋଲି ଗୁରୁଅଛେ ଜଣାଶୁଣା ।"

**ଟିପ୍ପଣୀ:**—ମାମୁଁ ଘର ଜଣେ—ବାଲୁଗାଁ ନିକଟବର୍ତ୍ତୀ ପରାକ୍ରମ ଅନିଶ୍ଚିତ ହୁଇଟି ପାହାଡ଼ ।

ଘଣ୍ଟଶିଳା—ବାଣପୁର ନିକଟସ୍ଥ ପାହାଡ଼; ଶାଳିଆ ନଦୀର ତଟଦେଶରେ ଅବସ୍ଥିତ ।"

ଶାଳିଆ—ବାଣପୁର ନିକଟରେ ପ୍ରବାହିତ କ୍ଷୁଦ୍ର ନଦୀ । ରାଧାନାଥ ଲେଖିଛନ୍ତି, "ବହଇ ଶାଳିଆ ପ୍ରସନ୍ନ ସଲିଳା, ତଟଦେଶେ ଯାର ଶୈଳ ଘଣ୍ଟଶିଳା ।"

ଭଗବତୀ—ବାଣପୁରର ପ୍ରସିଦ୍ଧ ଠାକୁରାଣୀ ।

ଚଡ଼େଇହଗା—ଚିଲିକା ଗର୍ଭରେ ଥିବା କ୍ଷୁଦ୍ର ପାହାଡ଼ ।

ପାରିକୁଦ—ଚିଲିକା ମଧ୍ୟସ୍ଥିତ ବଡ଼ ଦ୍ୱୀପ । ଏଥିରେ ଅନେକଗୁଡ଼ିଏ ଗ୍ରାମ ଅଛି । ପାରିକୁଦର ରାଜା ସାହେବ ଏ ଦ୍ୱୀପର ଜମିଦାର ।

ଖଲେରୀ—ଚିଲିକା କୂଳରେ ଥିବା ବଡ଼ ପାହାଡ଼ ।

କାଳିଜାଇ ଗଣ୍ଡ—ଏହା ଚିଲିକାର ଗମ୍ଭୀରତମ ଅଂଶ ।

ବାଲୁଗାଁ—ଚିଲିକା କୂଳରେ ଅବସ୍ଥିତ ଗ୍ରାମ । ଏଠାରେ ବି, ଏନ୍, ଆର୍,ର ଗୋଟିଏ ଷ୍ଟେସନ ଅଛି । ପାରିକୁଦକୁ ଯିବାପାଇଁ ଏଠାରୁ ନାଆରେ ବସିବାକୁ ହୁଏ ।

କାଳିଜାଇ ପର୍ବତ—ଏହା ଚିଲିକା ମଧ୍ୟସ୍ଥ ଗୋଟିଏ କ୍ଷୁଦ୍ର ପାହାଡ଼ । ଏଠାରେ କାଳିଜାଇ ଠାକୁରାଣୀ ଅଛନ୍ତି ।

---

## (୪୪) ବୁଦ୍ଧ ବନ୍ଦନା

### ( ଶ୍ରୀ ବୈକୁଣ୍ଠନାଥ ପଟ୍ଟନାୟକ )

**କଠିନ ଶବ୍ଦ:**—( ପୃ ୨୪୨ ) ତାପ—ଯନ୍ତ୍ରଣା (ମନୁଷ୍ୟ ଜୀବନ ତ୍ରିତାପରେ କ୍ଲିଷ୍ଟ । ତ୍ରିତାପ—ଆଧ୍ୟାତ୍ମିକ, ଆଧିଦୈବିକ, ଆଧିଭୌତିକ) କଳୁଷ—ପାପ, ବାଞ୍ଛା—ଦୃଢ଼ଅଭିଳାଷ, ଶ୍ରାନ୍ତ—(ଶ୍ରମ୍ + ତ) କ୍ଳାନ୍ତ, କ୍ଷୁବ୍ଧ (କ୍ଷୁଭ୍ + ତ) ବ୍ୟଥିତ, ବିଷ—ବିକାର, ଦୌର୍ବଲ୍ୟାଦି, ମୁକ୍ତିସ୍ପୃହା—

ସାଧାରଣ ଭିକ୍ଷୁକମାନେ ଅର୍ଥ ଭିକ୍ଷା କରିଥାନ୍ତି; ମାତ୍ର ବୌଦ୍ଧଭିକ୍ଷୁକମାନେ ନିର୍ବାଣ ବା ମୋକ୍ଷ ଭିକ୍ଷା କରିଥାନ୍ତି; ଅବରୁଦ୍ଧ (ଅବ—ରୁଧ୍+ତ) ବନ୍ଦ, ତିମିର—ଅନ୍ଧକାର, ଅରବିନ୍ଦ—ପଦ୍ମ, ଶୁଦ୍ଧ (ଶୁଧ୍+ତ) ପବିତ୍ର, ଭୃଙ୍ଗ—ଭ୍ରମର, ଲୁବ୍ଧ (ଲୁଭ୍+ତ) ଲୋଭୀ, ଛତ୍ରଭଙ୍ଗ—ପଳାୟନ, ଯୁଦ୍ଧଭୂମିରୁ ଛତ୍ରଭଙ୍ଗ ହେବା ପରାଜୟର ଲକ୍ଷଣ, ସଂଗ୍ରାମ—ଯୁଦ୍ଧ, ବାସନା—କାମନା, (ବୌଦ୍ଧମତରେ ବାସନା ବା କାମନା ମନୁଷ୍ୟର ସକଳ ଦୁଃଖର ମୂଳ କାରଣ । କାମନାର ବିନାଶ ହେଲେ ଦୁଃଖର ବିନାଶ ହେବ। ଧର୍ମ, ସଙ୍ଘ ଓ ବୁଦ୍ଧ ବୌଦ୍ଧମାନଙ୍କର ଉପାସ୍ୟ, ଅବିନଶ୍ୱର (ନ—ବି—ନଶ୍+ବର) ଚିରସ୍ଥାୟୀ, ନିର୍ଯ୍ୟାତିତ—ନିପୀଡ଼ିତ, ନୟନସଲିଲ···ଚକ୍ଷୁରଜଳ, ଅନ୍ତ୍ର ଅର୍ତ୍ତି—ମନୋବ୍ୟଥା, ସମୃଦ୍ଧ (ସମ୍—ଋଧ୍+ତ) ଶକ୍ତିଶାଳୀ ।

(ପୃ ୨୪୩)—ଶିବ—ମଙ୍ଗଳମୟ, ସତ୍ୟ—ଚିରସ୍ଥାୟୀ, ମୂର୍ତ୍ତ—ସୁନ୍ଦର (ବୁଦ୍ଧଦେବ ସତ୍ୟ ଶିବ ସୁନ୍ଦର ରୂପେ ବର୍ଣ୍ଣିତ), ଅସ୍ତ୍ର—ଅସ୍ତ୍ର, (ଅସ୍ତ୍ରଦ୍ୱାରା ଶତ୍ରୁକୁ ଦମନ କରାଯାଏ, ଗୈରିକ ବସନ ଧାରଣ କରି ବୌଦ୍ଧ ସଙ୍ଘର ନିୟମ ପାଳନ କଲେ ସାଂସାରିକ ପାପ ତାପରୁ ଉଦ୍ଧାର ମିଳେ, ତେଣୁ ଗୈରିକ ବସ୍ତ୍ର ଅସ୍ତ୍ର ରୂପେ କଳ୍ପିତ)

**ସାରକଥା** — ହେ ଭଗବାନ୍ ବୁଦ୍ଧ, ମୁଁ ଶ୍ରାନ୍ତ କ୍ଳାନ୍ତ ଭିକ୍ଷୁକ । ମୋର ଜୀବନ ପାପ ତାପରେ କ୍ଳିଷ୍ଟ । ମୁଁ ମୁକ୍ତି ଭିକ୍ଷା ମାଗୁଅଛି । ମୋର ହୃଦୟ ଦ୍ୱାରକୁ ଉନ୍ମୁକ୍ତ କରିଦିଅ । ମୋର ଏ ନୀରସ ପ୍ରାଣରେ ଅମୃତ ବୃଷ୍ଟି କର । ତୁମର ଅନୁଗ୍ରହରୁ ମୋର ହୃଦୟର ବିଷାଦ ଅନ୍ଧକାର ଦୂର ହେବ, ହର୍ଷର ଆଲୋକ ପ୍ରକଟିତ ହେବ । ପାପ ହେତୁରୁ ମୋର ଜୀବନ ପଦ୍ମ ମୁଦ୍ରିତ ହୋଇଅଛି । ତାକୁ ବିକଶିତ କର । ମୋର ଜୀବନ ଚିର ଦୁଃଖମୟ । ମୁଁ ଚିର ପାପୀ । ମୁଁ ତୁମର ପଦ ବନ୍ଦନା କରିବାକୁ ଆସିଅଛି । ତୁମଠାରେ ମୋର ବିଶ୍ୱାସ ରହୁ, ହୃଦୟରେ ବଳ ଆସୁ । ମୁଁ ଜୀବନସଂଗ୍ରାମରେ ଶତ ଶତ ବାର ପରାଜୟ ସ୍ୱୀକାର କରିଅଛି, ବାସନା ମୋହରେ ନରକର ଦୁଃଖ ଯନ୍ତ୍ରଣା ଭୋଗ କରିଅଛି । ତେଣୁ ମୁଁ ନିବୃତ୍ତ

ନିମନ୍ତେ ବୁଦ୍ଧ, ସଂଘ ଓ ଧର୍ମର ଶରଣ ନେଉଅଛି । ମୁଁ ଜୀବନରେ ନାନା କଷ୍ଟ ଭୋଗିଅଛି । ଚକ୍ଷୁର ଲୋତକରେ ତୁମ୍ଭର ପାଦ ଧୋଇବାକୁ ଅନୁମତି ଦିଅ । ତୁମ୍ଭ ପାଦପଦ୍ମରେ ସ୍ଥାନ ପାଇଲେ ମୁଁ ସବୁ ଦୁଃଖ ଦୈନ୍ୟ ଭୁଲିଯିବି । ତୁମ୍ଭର ଅପାର ଦୟାରୁ ପାପ ବହୁଦୂର ହୁଏ । ସଂସାର ମାୟା ଅପସୃତ ହୁଏ । ମୁଁ ତୁମ୍ଭ ପାଦପଦ୍ମରେ ଆଶ୍ରୟ ପ୍ରାର୍ଥନା କରୁଅଛି । ମୋର ହୃଦୟରୁ ସନ୍ଦେହ ଦୂର କର । ବୌଦ୍ଧଧର୍ମର ପବିତ୍ର ଆଦର୍ଶ ଗ୍ରହଣ କରି ମୁଁ ପବିତ୍ର ହୁଏ । ମୁଁ ସଂଘର ଗୈରିକ ବସନ ଓ ପବିତ୍ର ଦୀକ୍ଷା ଗ୍ରହଣ କରି ଶାନ୍ତିପୂର୍ଣ୍ଣ ହେବି, ମୋ ପ୍ରତି ଏହି ଅନୁଗ୍ରହ କର ।



## (୪୦) ଗାନ୍ଧାରୀର ଆଶୀର୍ବାଦ

### (ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ)

**କବି ପରିଚୟ**—ଉତ୍କଳର ଆଧୁନିକ ଲେଖକମାନଙ୍କ ମଧ୍ୟରେ କାଳନ୍ଦୀ ବାବୁ ସୁପରିଚିତ ଓ ଲବ୍ଧପ୍ରତିଷ୍ଠ । ପୁରୀ ଜିଲ୍ଲା ସ୍କୁଲରୁ ମାଟ୍ରିକ ପାଶ୍ କରି ସେ ରେଭେନ୍‌ସା କଲେଜରେ ଶିକ୍ଷା ପାଇଥିଲେ । ବି. ଏ. ପାଶ୍ ପରେ ସେ କିଛିଦିନ ସମବାୟ ବିଭାଗରେ ଓ ତତ୍‌ପରେ ମୟୂରଭଞ୍ଜ ଷ୍ଟେଟ୍‌ରେ କାର୍ଯ୍ୟ କରିଥିଲେ । ତାଙ୍କର ଗଳ୍ପ, ଉପନ୍ୟାସ, ପ୍ରବନ୍ଧ, କବିତା ପ୍ରଭୃତି ଦ୍ୱାରା ଆଧୁନିକ ଓଡ଼ିଆ ସାହିତ୍ୟ ପୁଷ୍ଟ ହେଉଅଛି । 'ଗାନ୍ଧାରୀର ଆଶୀର୍ବାଦ' କବିତାଟିରେ କବି ମାତୃ ହୃଦୟର ସାର୍ବଜନୀନ ସ୍ନେହ ସଙ୍ଗେ ସଙ୍ଗେ ନ୍ୟାୟ ଓ ଧର୍ମ ପ୍ରତି ଅଟଳ ବିଶ୍ୱାସ ଦେଖାଇଛନ୍ତି ।

ଆଶୀର୍ବାଦ (ଆଶିଃ—ବଦ୍+ଅ) ଅଶିଷ, ଜନନୀ (ଜନ୍+ଅନ୍, ସ୍ତ୍ରୀ ଈ), ଅରାତି—ଶତ୍ରୁ, ବନ୍ଧନ (ବି—ଧା+ତ) ଶୂନ୍ୟ, ଶ୍ରେଷ୍ଠ (ପ୍ରଶସ୍ୟ+ଇଷ୍ଠ), ଭିର (ଭୃ+କ୍ୱିପ୍) ଭୃତ୍ୟ, ଅଭିଶାପ (ଅଭି—ଶପ୍+ଅ), ବରାଭୟ (ବର+ଅଭୟ), ଧର୍ମ (ଧୃ+ମନ୍) ପୁଣ୍ୟ, ପ୍ରମାଦ (ପ୍ର—

ମଦ୍+ଅ), ଶାନ୍ତ (ଶମ୍+ତ), ମହିମା (ମହତ୍+ଇମନ୍) ,ଚଞ୍ଚଳ—ଚପଳ, କାନ୍ତ (କମ୍+ତ), ଜ୍ୟୋତି (ଦ୍ୟୁତ୍+ଇସ୍) ତେଜ, ପ୍ରବୁଦ୍ଧ [ପ୍ରବୁଧ୍+ତ], ଅକ୍ଷର—ନିତ୍ୟ, ଷଡ୍ରିପୁ, ପୁଣ୍ୟ [ପୁଣ୍+ଯ] ନ୍ୟାୟ୍ୟ, ଜଗତ୍ (ଗମ୍+କ୍ୱିପ୍) ପୃଥିବୀ, ବତ୍ସ, [ବଦ୍+ସ] ପୁତ୍ର, ନନ୍ଦନ[ନନ୍ଦ+ଅନ] ପୁତ୍ର, ରୁଧିର [ରୁଧ୍+ଇର] ରକ୍ତ, ନିଧନ (ନି—ଧନ୍+ଅ)ବିନାଶ, ବେଦନା (ବିଦ୍+ଅନ+ଆ) ଦୁଃଖ, ଶୋକ [ଶୁଚ୍+ଅ] ଦୁଃଖ, ଭୟ (ଭୀ+ଅ), ଉପାଦାନ [ ଉପ—ଆ—ଦା+ଅନ ] ଉପକରଣ, ବାଣ (ବାଣ୍+ବ) ସଂସାର, ଅଦ୍ରି (ଅଦ୍+ରି) ପର୍ବତ, ପରିଚୟ [ପରି—ଚି +ଅ) ]

ସାଧୁଶବ୍ଦ—ନିଠୁର—ନିଷ୍ଠୁର, ହିଆ—ହୃଦୟ, ଭଣା—ଭନ, ଯୁଝ—ଯୁଦ୍ଧ ।

ଯାକରଆ—କୁରୁକ୍ଷେତ୍ର ଯୁଦ୍ଧ ପୂର୍ବରୁ କୁରୁରାଜ ଦୁର୍ଯ୍ୟୋଧନ ମାତା ଗାନ୍ଧାରୀଙ୍କ ପାଦତଳେ ପ୍ରଣାମ ପୂର୍ବକ ପ୍ରାର୍ଥନା କଲେ, "ମାଆ, ମୋତେ ଆଶୀର୍ବାଦ କର । ଯେପରି ମୁଁ ପୃଥିବୀକୁ ଶତ୍ରୁଶୂନ୍ୟ କରି ରାଜୟ ଚାଳନା ଯେମନି ଫେରି ଆସିବି । ତୁ ଶତ ପୁତ୍ରର ମାଆ । ତୋର ଆଦେଶରେ ଆମେ ଏ ତିନିଭୁବନ ଜୟ କରିପାରିବୁ ।" ଗାନ୍ଧାରୀ ମଧୁର ଭାବରେ ଉତ୍ତର କଲେ, "ବତ୍ସ, ଯଦି ଇଚ୍ଛା କରୁଛ ତେବେ ଯୁଦ୍ଧ କର । ତୁମ୍ଭମାନଙ୍କ ମାଆର ଏହି ଆଶୀର୍ବାଦ ଗ୍ରହଣ କର, "ଜଗତରେ ପୁଣ୍ୟ ଅକ୍ଷୟ ହେବ, ଧର୍ମର ଜୟ ହେବ ।" ମାଆଙ୍କଠାରୁ ଏପରି ବାକ୍ୟ ଶ୍ରବଣ କରି ଦୁର୍ଯ୍ୟୋଧନ ଚକିତ ହେଲେ । ସେ ଦେଖିଲେ ଯେ ତାଙ୍କର ମୁଖ ପ୍ରଶାନ୍ତ । ସେଥିରେ ଭୟର ଲେଶ ନାହିଁ । ବରଂ ହସ ଫୁଟି ଉଠୁଛି । ସେ ମୁଖର ଜ୍ୟୋତି ଦେଖି ଦୁର୍ଯ୍ୟୋଧନ ବିସ୍ମିତ ହେଲେ । ଶତ ପୁତ୍ରଙ୍କୁ ଯୁଦ୍ଧକୁ ପଠାଇ ତାଙ୍କ ମନରେ ଲବମାତ୍ର ଦୁଃଖ ନାହିଁ । ଏହା ଦେଖି,ସେ ବୁଝିପାରିଲେ ନାହିଁ ଯେ ଏ ମାତାଙ୍କର ଆଶୀର୍ବାଦ କି ଅଭିଶାପ । ଗାନ୍ଧାରୀ କହିବାକୁ ଲାଗିଲେ, "ଯାଅ ବତ୍ସ, ଯୁଦ୍ଧଭୂମିରେ ଅବତୀର୍ଣ୍ଣ ହୁଅ । ପୃଥିବୀରୁ ଅଧର୍ମର କ୍ଷୟ ହେଉ । ଧର୍ମର ଜୟ ହେଉ । ମୁଁ କେବଳ ଶତ ପୁତ୍ରର

ଜନନୀ ନୁହେଁ । ଏ ଧର୍ମ ଯୁଦ୍ଧରେ ସମସ୍ତେ ମୋର ସନ୍ତାନ । ଯୁଧିଷ୍ଠିର, ଭୀମ, ଅର୍ଜୁନ ପ୍ରଭୃତି ପାଣ୍ଡବ ସେନା ହୁଅନ୍ତୁ, ଅଥବା କୌରବ ସେନା ହୁଅନ୍ତୁ, ମୋ ପକ୍ଷରେ ସମସ୍ତେ ସମାନ । ଯେଉଁ ମାଆ ନିଜ ବକ୍ଷର ରକ୍ତ ଦେଇ ଶତ ପୁତ୍ରଙ୍କୁ ପାଳନ କରିଛି, ସେ କ'ଣ ସବୁ ମାଆଙ୍କର ହୃଦୟ କଥା ବୁଝି ପାରୁନାହିଁ ? ଦୁର୍ଯ୍ୟୋଧନର ମୃତ୍ୟୁରେ ମୋ ହୃଦୟରେ ଯେଉଁ ବ୍ୟଥା ହେବ, ଅର୍ଜୁନର ମୃତ୍ୟୁରେ ତାହାଠାରୁ ଊଣା ବ୍ୟଥା ହେବ ନାହିଁ । ଦୁଃଖ ବା ଭୟର କାରଣ ନାହିଁ, ଧର୍ମର ଜୟ ହେବ ।"

ଗାନ୍ଧାରୀଙ୍କ ମାତୃହୃଦୟ ଭିନ୍ନ ଉପାଦାନରେ ଗଠିତ । ସମଗ୍ର ମାନବ ଜାତି ତାଙ୍କ ଚକ୍ଷୁରେ ନିଜର ସନ୍ତାନ । ମାନବ ଜାତିର ଦୁଃଖରେ ଗାନ୍ଧାରୀଙ୍କ ହୃଦୟ ଦ୍ରବୀଭୂତ । ସେ ଶତ ପୁତ୍ରର ମାତା ସତ୍ୟ, ମାତ୍ର ସେ କୋଟି ବିଶ୍ୱର ଜନନୀ । ଶତ ଶତ ଜନନୀଙ୍କର ହୃଦୟ ବେଦନାରେ ତାଙ୍କର ପ୍ରାଣ ବିଗଳିତ । ତାଙ୍କ ହୃଦୟକୁ ଅଭିମାନ ସ୍ପର୍ଶ କରିପାରି ନ ଥିଲା । ନିଜ ପୁତ୍ର ଓ ପାଣ୍ଡବମାନଙ୍କ ମଧ୍ୟରେ ଗାନ୍ଧାରୀ ପାର୍ଥକ୍ୟ ଦେଖିଲେ ନାହିଁ । କାହାର ଜୟ ହେବ କାହାର ପରାଜୟ ହେବ ସେ କଥା ତାଙ୍କ ହୃଦୟରେ ସ୍ଥାନ ପାଇଲା ନାହିଁ । ଧର୍ମଯୁଦ୍ଧରେ ସମଗ୍ର ମାନବ ଜାତି ସମାନ । ତେଣୁ ସେ 'ଜୟୀ ହୁଅ' ବୋଲି ପୁଅକୁ ଆଶୀର୍ବାଦ କରି ପାରିଲେ ନାହିଁ । ଗାନ୍ଧାରୀ ଏହାଦ୍ୱାରା ପ୍ରକୃତି ମାତୃ ହୃଦୟରେ ମହାନ୍ ପରିଚୟ ଦେଲେ । ଚିରକାଳ ଧର୍ମର ଜୟ ।

**ଟିପ୍ପଣୀ**—କୁରୁ ଚୂଡ଼ାମଣି—କୁରୁଶ୍ରେଷ୍ଠ ଦୁର୍ଯ୍ୟୋଧନ, ଶତେକ ପୁତ୍ର ଜନନୀ—ଗାନ୍ଧାରୀ, ଦୁର୍ଯ୍ୟୋଧନ, ଦୁଃଶାସନ ପ୍ରଭୃତି ଶହେ ସଂଖ୍ୟକ କୌରବ ତାଙ୍କର ପୁତ୍ର ଥିଲେ । ଧର୍ମନନ୍ଦନ—ଧର୍ମପୁତ୍ର, ଯୁଧିଷ୍ଠିର ।

# (୫୧) ଛୋଟ ମୋର ଗାଁଟି

## (କବି—ଶ୍ରୀ ସଚ୍ଚି ରାଉତରାୟ)

**କବି ପରିଚୟ**—ଶ୍ରୀ ସଚ୍ଚି ରାଉତରାୟ, ବି, ଏ, ଆଧୁନିକ ଉତ୍କଳର ଜଣେ ଶକ୍ତିଶାଳୀ ଲେଖକ । ତାଙ୍କ କବିତା, ଗଳ୍ପ ଓ ଉପନ୍ୟାସରେ ନୂତନ ଭାବଧାରା ଲକ୍ଷିତ ହୁଏ ।

**ଶବ୍ଦାର୍ଥ**—ନାଉଁଆ—ନୁଆଁଣିଆ, ନୀଚ ଶ୍ରେଣୀର, ଏକୁଣା—ଏକ ପ୍ରାନ୍ତରେ ଥିବା, ସାହା—ଆଶ୍ରା, ଚଉଲି—ବାଣହାଣି ହୁଅର କରାଯାଇଥିବା କନ୍ଦ ।

**ସାଧୁଶବ୍ଦ**—ପୋଥି—ପୁସ୍ତକ, ଓଟୀ—ଓଷ୍ଠୀ, ଢାହା—ଦାହ, ନାହା— ନୌକା, ପଗୁଣ—ଫାଲ୍‌ଗୁନ, ଗାଁ—ଗ୍ରାମ, ଲଠା—ଲଟ୍ଠା, ରାହା—ରଥ୍ୟା, ଥାନ—ସ୍ଥାନ, ଭୁଇଁ—ଭୂମି, କ୍ଷଉ—କ୍ଷୀଆ, ଖୁଦର—କ୍ଷୁଦ୍ର ।

ମୋର ଗାଁଟି ଅତି ଛୋଟ । ତାର ନାଁ ଭୂଗୋଳ ବହିରେ ଦେଖିବାକୁ ମିଳିବ ନାହିଁ । ମାତ୍ର ସେ ଗାଁଟି ମୋ ପକ୍ଷରେ ସ୍ୱର୍ଗପରି । ସେହିଠାରେ ମୋର ଜନ୍ମ । ଏବେ ସେଠାରେ ମୋର ଛୋଟ କୁଆଁ କାଳିଦ । ତାର ଛୋଟା ମାଳାରେ କେତେ ବୁଲିଛି, ତାର କୋଳରେ ପୁଣି ମୋର ପଞ୍ଚପ୍ରାଣ ପୋଡ଼ିହୋଇ ପାଉଁଶରେ ମିଶିଯିବ । ମୋ ଦେହରେ ତାର ପାଣି ରକ୍ତ ହୋଇ ବହୁଛି । ମୋ ନିଶ୍ୱାସରେ ତାର ପବନ ପା' ଆସ କରୁଛି । ତାର ଫୁଲ ଫଳ ଗଛଲତା ଦେଖି ମୋର ମୁହଁରୁ କବିତା ବାହାରିପଡ଼େ । ତାର ଝରଣା ଦେଖି ମୋ ମନରେ କେତେ ସପନର ଛବି ଆଙ୍କି ହୋଇଯାଏ । ତାର ବଣ ଲତା, ତାର ଗାଈଗୋଠରେ ବଂଶୀବଜା, ଫସଲ୍ କାଟିବାବେଳର ମଧୁର ଗୀତ, ଏ ସବୁ ମୋର ସାଥି ।

ତାର ଆଲୁଅ ସୁନ୍ଦର, ଅନ୍ଧାର ଅଦ୍ଭୁତ ସୁନ୍ଦର । ତାର ପ୍ରତ୍ୟେକ ଜିନିଷ ଜୀବନରେ ନୂତନତ୍ୱ ଫିଟାଇଦିଏ । ମୋ ଗାଆଁଟି ଅତି ଶ୍ରେଷ୍ଠ । ଦୁନିଆରେ ତାର ସ୍ଥାନ ଅତି ହୀନ । ତଥାପି ତାର ଛବିଟି ଦୂରରୁ ଦେଖିବା ପାଇଁ ମୋର ମନ ଅଥୟ ହୁଏ । ମୋର ସେହି ଶ୍ରେଷ୍ଠ ଗାଆଁଟିରେ କେତେ ବଡ଼ଲୋକ କେତେ ଅଜଣା ଅଶୁଣା ଲୋକ ଜନମ ହୋଇଛନ୍ତି, ମରିଛନ୍ତି ତାର ଠିକଣା ନାହିଁ । ସେଠି ବହୁ ମୂରୁବି ଥିଲେ । ତାଙ୍କର ମାମଲାରେ ଭରା ଗୁର୍ବି । ତାଙ୍କ ସାଥିରେ ଗୋଦର ଗୋଡ଼ ଛଣି ମହାନ୍ତି ମନ୍ତ୍ରୀ ମିଳିଥିଲେ । ଶେଷକୁ ଲୋକେ ଗାଆଁ ଛାଡ଼ି ପଳାଇଲେ । ଉଦରେ ବାଲୁଆ ତେଇଁଲେ, କେତେ ଅସାମି ଗଲେ । ଗାଆଁର ଶ୍ରୀବୃଦ୍ଧି ନଷ୍ଟ ହେଲା ।

ଆଉ ଜଣେ ଥିଲେ ସାନ୍ତରାଏ । ସେ ଏମିତି କଲେ ଯେ, ଗାଆଁର ସମସ୍ତେ ଦେଣାରେ ବୁଡ଼ିଗଲେ । ରେଙ୍ଗୁନ ଯାଇ ପେଟ ପୋଷିଲେ ।

ଏଇ ଗାଆଁରେ କପିଳନନ୍ଦେ ଏପରି ଥିଲେ ଯେ ସେ ଗୁଣିଲେ ଭୂଇଁ ଲିପିଯାଏ । ସେ ସବୁ କଥାରେ ମୁରବିପଣ ଦେଖାଇ ହାତ ହଲାଉଥିଲେ ।

ଗାଆଁର ସର୍ବସ୍ୱକାର ଥିଲେ ଯେ ଜଣକୁ ପୋଷିଲେ ପଣକୁ ଶୋଷନ୍ତି । ସେ ପାଠଶାଳାର ନାଆଁ ଧରି ନଥିଲେ; ନାଁ ଲେଖିବାକୁ ପଡ଼ିଲେ ସେ ସନ୍ତକ କାଟନ୍ତି ।

ଗୋବର୍ଦ୍ଧନ ହେଉ ଗାଆଁର ଚୌକିଦାର ଥିଲା । ଉଲମେ ଝାଡ଼ିଦେଇ ଗଞ୍ଜପାକ ନିଶ୍ଚିନ୍ତରେ ଶୋଇଥାଏ । ସକାଳୁ କହୁଥିଲେ, କାଲି ଘଞ୍ଚନାଇ ଶ୍ରୀଧରକୁ ଭୂଆଁ ବୁଲେଇ ହେଲା ।

ଆମ ଗାଆଁର ଜଟିଆ ବୁଢ଼ୀକୁ ସମସ୍ତେ ଖୁଡ଼ୀ ବୋଲି ଡାକନ୍ତି । ସବୁଙ୍କ ଘରର ଅନ୍ଧ ସନ୍ଧି ତାକୁ ଜଣା । ତା ମୁହଁ ସବୁବେଳେ ସାହାଣ ହୁଏ । କଣ୍ଟା ବାଡ଼ରେ ଲୁଗା ପକାଇ କଳି କରିବାକୁ ସେ ସର୍ବଦା ତିଆରି । କଳି କଜିଆରେ ତା ସହିତ କେହି ପାରିବେ ନାହିଁ ।

କେତୁଆ, କିଧା, ଅଇଁଠା ପ୍ରଭୃତିଙ୍କ ସାଙ୍ଗରେ କେତେଥର ବାହୁଡ଼ି ଖେଳିଛି । ଆଏ କେଉଁଠି ଜୀଏ, ଆଏ କେଉଁଠି ମରେ ତାର ଠିକଣା ନାହିଁ । ମୁଁ କିନ୍ତୁ ଭୁଲି ନାହିଁ ମନରୁ ନାହିଁ ।

ଗାଁ ମୁଣ୍ଡରେ ଗୋଟିଏ ବଉଳଗଛ । ତା ପାଖରେ ଦେବୀ ଏକୋ ଘର ସେଠି ଗୋଟିଏ ବିଧବା ଥିଲା । ତାର ଗୋଟିଏ ଛୋଟ ପିଲା ଥିଲା । ସେ ଖେଳ ଧୂଳିଘ ଖାଇ ଅଣ୍ଟା ଚଉରିମୂଳେ ମୁଣ୍ଡିଆ ମାରେ । ସେ କୁଆଡ଼େ ଗଲାଣି । ତାର ଆତ୍ମା ଏବେ ସେଠି ଆକାଶଦୀପ ହୋଇ ଜଳୁଛି ।

ମୁଁ ଏବେ ବିଦେଶରେ ରହୁଛି । ମୋ ଗାଁଅଁର ଛବିଟି ମୋ ଆଗରେ ନାଚି ଯାଉଛି । ତାର ମାଟିରେ ଥରେ ମୁଣ୍ଡ ଲଗାଇ ଜୁହାର କରିବାକୁ ମୋର ବଡ଼ ଇଚ୍ଛା ହେଉଛି ।

---

## (୫୬) ଗ୍ରାମ୍ୟ ଶ୍ମଶାନ

### (ଶ୍ରୀ—ଜଗନ୍ନାଥ ତ୍ରିପାଠୀ)

**କଠିନ ଶବ୍ଦ**—(ପୃ ୧୬୭) ସଦନ—ଗୃହ, ନିସ୍ତବ୍ଧ (ନି—ସ୍ତବ୍ଧ +ତ) ନୀରବ, ଝିଙ୍କା—ମଇଁଷିମାନଙ୍କ ଗଳାରେ ବନ୍ଧା ହୋଇଥିବା ଏକ ପ୍ରକାର ବାଉଁଶ ନଳି, ଏଗୁଡ଼ିକ ପରସ୍ପର ବାଜି ଏକପ୍ରକାର ଶବ୍ଦ କରନ୍ତି । ଶଶଧର-ଚନ୍ଦ୍ର, ପେଚକ—ପେଚା, ଦ୍ୱନ୍ଦ୍ୱ—କଳହ, ପାରାବତ-ପାରା, ପାମର—ଅଧମ, ଶ୍ୟାମକୁଦ—ଶବ ପୋଡ଼ା ଯାଇଥିବା ସ୍ଥାନ, ଏହା ଟିକିଏ ଉଚ୍ଚ ଓ ଉପରେ ଘାସ ମାଡ଼ିଥିବାରୁ ଶ୍ୟାମ ବର୍ଣ୍ଣ, ମନ୍ଦ—ଧୀର, (୧୬୮) ମରୁତ ପବନ, କନ୍ଦଳପତ୍ର—କଦଳିପାଟ, ଝୁଙ୍କ—ଧ୍ୱନି, ଚରଣାମୃତ—(ଚରଣ ଅମୃତ ପାହାର, ବହୁବ୍ରୀହି); ହୁଳହୁଳି; ନିସ୍ୱନ—ଶବ୍ଦ, ଭାନ—କାନ୍ତି, ଇତ୍ୟାଦ ଜଳିବା ଜିନିଷ, ବନ୍ଧିତ—ବିଶେଷ ଭାବରେ ବନ୍ଧ, ଅନ୍ତମୂଳ—ଅନ୍ତଃପୁରରେ ଥିବା ଲୋକ, ନୀରବ—ଦରିଦ୍ର, (୧୬୯) ସ୍ମାରକସ୍ତମ୍ଭ—ମୃତ ବ୍ୟକ୍ତିର ସ୍ମୃତିରକ୍ଷା ଲାଗି ନିର୍ମିତ ହୋଇଥାଏ । ପ୍ରଶଂସା—ପ୍ରଶଂସନ, ଉତ୍କୃଷ୍ଟ—ଉପହାସ, ମହତ୍ତ୍ୱ (ମହତ୍+ତ୍ୱ ଭାବାର୍ଥରେ ତ୍ୱ) ଗରିମା, ବଡ଼ପଣ; ଉଗାଗ୍ର—ଶତ୍ରୁ, ସ୍ୱଚ୍ଛ (ସୁ+ଅଚ୍ଛ) ଅତି ନିର୍ମଳ, (ପୃ ୧୭୦) ଦମ—ଲୋଭୀଙ୍କୁ ପାଣ୍ଡବ, ସେ ବଳରେ ଅତୁଳନୀୟ ଥିଲେ । ମୁକ୍ତି—ପ୍ରଦତ୍ତ ସମ୍ପତ୍ତି ଭବ ।

**ସାରକଥା**—ସନ୍ଧ୍ୟାକାଳ ଉପସ୍ଥିତ । ଦେବ ମନ୍ଦିରରେ ଆରତି ଘଣ୍ଟା ବାଜୁଅଛି । ଗୋଠରୁ ଗୋରୁପଲ ଧୀରେ ଧୀରେ ଘରକୁ ଫେରି ଆସୁଅଛନ୍ତି । କୃଷକ ଦିନର କାର୍ଯ୍ୟ ସାରି କ୍ଳାନ୍ତ ଭାବରେ ଘରକୁ ଆସୁଅଛି । ଏହି ସମୟରେ ହୃଦୟରେ ନାନା ଭାବ ଜାଗୁଅଛି ।

ସ୍ଥଳ ଜଗତର ଦୃଶ୍ୟ ସନ୍ଧ୍ୟା ଆଗମନ ହେତୁରୁ ଲୁଚି ଯାଉଅଛି । ଗଭୀର ନୀରବତା ପୃଥିବୀରେ ବ୍ୟାପି ଯାଉଅଛି । କେବଳ ମକ୍ଷିକାମାନଙ୍କର ଘୁଣୁ ଘୁଣୁ ସ୍ୱର ବା ମଞ୍ଚି-ଟିପାର ଶବ୍ଦ ଶୁଣା ଯାଉଅଛି ।

ପ୍ରକାଣ୍ଡ ବଟବୃକ୍ଷ ତଳେ ଗ୍ରାମର ଶ୍ମଶାନ ଅବସ୍ଥିତ । ଏହି କ୍ଷୁଦ୍ର ପଲ୍ଲୀର ପୂର୍ବ ପୁରୁଷମାନେ ସଂସାର-ମାୟା ତ୍ୟାଗ କରି ସେହି ବଟବୃକ୍ଷ ମୂଳରେ ଚିର ଶୟନରେ ନିଦ୍ରିତ ଅଛନ୍ତି । ପ୍ରଭାତ କାଳର ଧୀର ପବନ, ଚିଢ଼ଳପାଟର ମଧୁର ଧ୍ୱନି କିମ୍ବା କୁକୁଟର ଡାକରେ ଆଉ ଏମାନଙ୍କର ନିଦ୍ରା ଭଙ୍ଗ ହେବ ନାହିଁ । ଏମାନଙ୍କ ପାଇଁ ଆଉ ଗୃହିଣୀମାନେ ରନ୍ଧନ କରିବାକୁ ବ୍ୟସ୍ତ ହେବେ ନାହିଁ । ସନ୍ତାନମାନେ ଆଉ ଏମାନଙ୍କ ଆଦର ପାଇବାକୁ ଧାଇଁ ଆସିବେ ନାହିଁ ।

ଏମାନେ କଠିନ ପରିଶ୍ରମ କରି କେତେ ଶସ୍ୟ ଅମଳ କରୁଥିଲେ । କେତେ ଆନନ୍ଦରେ ଜମି ଚାଷ କରୁଥିଲେ, ଜଙ୍ଗଲରୁ କାଠ ଆଣୁଥିଲେ । ଏହି ଗ୍ରାମବାସୀମାନଙ୍କର ବର୍ଣ୍ଣନା ଶୁଣି ଅଭିମାନୀ ଆଡ଼ମ୍ବରପ୍ରିୟ ଲୋକେ ଉପହାସ କରିବା ଅନୁଚିତ । କୁଳ ଗୌରବ, ସୌନ୍ଦର୍ଯ୍ୟ, ସମ୍ପତ୍ତି ସବୁ ଅଳ୍ପ କାଳସ୍ଥାୟୀ । ଏସବୁ ନେଇ ଗର୍ବ କରିବା ଅନୁଚିତ । ଯେତେ କୀର୍ତ୍ତିଶାଳୀ ଲୋକ ମଧ୍ୟ ମୃତ୍ୟୁର ଅଧୀନ ।

ଏହି ଗ୍ରାମବାସୀମାନଙ୍କର ସ୍ମୃତି ରକ୍ଷା ଲାଗି ଶ୍ମଶାନ ଭୂମିରେ କୌଣସି ସ୍ମୃତିସ୍ତମ୍ଭ ନାହିଁ, ସେମାନଙ୍କର କୀର୍ତ୍ତିଗାଥା କୌଣସିଠାରେ ଖୋଦିତ ହୋଇ ନାହିଁ । କିମ୍ବା ସେମାନଙ୍କର ପ୍ରତିମୂର୍ତ୍ତି ରଖାଯାଇ ନାହିଁ ସତ; କିନ୍ତୁ ଏପ୍ରକାର ସମ୍ମାନ ଦ୍ୱାରା କେହି ମୃତ ବ୍ୟକ୍ତି କେବେ ପୁନର୍ଜୀବନ ଲାଭ କରିଅଛି କି ? ତୋଷାମୋଦପୂର୍ଣ୍ଣ ବାକ୍ୟ କେବେ ମୃତ ବ୍ୟକ୍ତିର ଶ୍ରୁତିରଞ୍ଜନ କରିପାରେ କି ?

ହୁଏତ ଏହି ଗ୍ରାମ୍ୟ ଶ୍ମଶାନରେ ଏପରି କେତେ ଲୋକ ମହାନିଦ୍ରାରେ ମଗ୍ନ ଅଛନ୍ତି ଯେଉଁମାନଙ୍କର ହୃଦୟ ସ୍ୱର୍ଗୀୟ ଶକ୍ତିରେ ପରିପୂର୍ଣ୍ଣ ଥିଲା, ସେଉଁମାନଙ୍କର ବିଶାଳ ରାଜ୍ୟ ପରିଚାଳନା କରିବାର ଶକ୍ତି ଥିଲା କିମ୍ବା ଉଚ୍ଚ କବି ଆସନରେ ବସିବାର ସାମର୍ଥ୍ୟ ଥିଲା । ମାତ୍ର ସେମାନେ ଶିକ୍ଷାଲାଭ କରିବାର ସୁବିଧା ପାଇ ପାରି ନ ଥିଲେ । ଦାରିଦ୍ର୍ୟ ହେତୁରୁ ସେମାନଙ୍କର ପ୍ରତିଭା ବିକାଶ ଲାଭ କରି ପାରି ନ ଥିଲା । ବାସ୍ତବରେ ଦାରିଦ୍ର୍ୟ ସକଳ ଗୁଣ ନଷ୍ଟ କରିଦିଏ ।

ସାଗର ଗର୍ଭରେ କେତେ ଅମୂଲ୍ୟ ରତ୍ନ ନିହିତ ଅଛି କିନ୍ତୁ ତା ଖବର କେତେ ଜଣ ବିଦବଶାଳୀ ଜାଣନ୍ତି ? ସେହିପରି ବଣରେ କେତେ ମାଳତୀ ଫୁଟି ବଣରେ ନଷ୍ଟ ହୋଇଯାଏ, ଲୋକେ ତାର ସୁବାସ ଉପଭୋଗ କରି ପାରନ୍ତି ନାହିଁ । ଏହି ଗ୍ରାମବାସୀଙ୍କର ପ୍ରତିଭା ସେହିପରି ନିରର୍ଥକ ହୋଇଥିଲା ।

ଏହି ଶ୍ମଶାନ ଭୂମିରେ କେତେ ଲୋକ ଚିର ନିଦ୍ରାରେ ନିଦ୍ରିତ । ସେମାନଙ୍କ ମଧ୍ୟରୁ କେହି ସୁବିଧା ଓ ସୁଯୋଗ ପାଇଥିଲେ ହାମ୍ପଡେନଙ୍କ ପରି ପରାକ୍ରାନ୍ତ ବୀର କିମ୍ବା ମିଲଟନଙ୍କ ପରି ପ୍ରସିଦ୍ଧ କବି ହୋଇ ପାରିଥାନ୍ତେ । ଅନ୍ୟ କେତେ ସାହସ ଓ ଦେଶ ପ୍ରେମରେ ପ୍ରତାପଚନ୍ଦ୍ରଙ୍କର ସମକକ୍ଷ ହୋଇ ପାରିଥାନ୍ତେ, କିନ୍ତୁ ବାଧାବିଘ୍ନ ଦଳି, ଯଶଲାଭ କରିବାର ସୌଭାଗ୍ୟ ସେମାନଙ୍କର ଘଟି ନ ଥିଲା । ସେମାନଙ୍କର ଏସବୁ ଗୁଣ ନ ଥିଲା, ଦୋଷ ମଧ୍ୟ ନ ଥିଲା । ସେମାନେ ନିଜର ଅଭାବ ଦୂର କରି ସନ୍ତୋଷରେ କାଳ ଯାପନ କରୁଥିଲେ । ନିର୍ଦ୍ଦୟ ଭାବରେ ଆତ୍ମୀୟ ସ୍ୱଜନଙ୍କୁ ବିନାଶ କରି ସିଂହାସନ ଲାଭ କରିବାର ଇଚ୍ଛା ସେମାନଙ୍କ ହୃଦୟରେ କେବେହେଲେ ଜାଗି ନ ଥିଲା ।

ଅନ୍ୟାନ୍ୟ କାର୍ଯ୍ୟକୁ ଗୋପନ ରଖିବା ପାଇଁ ମିଥ୍ୟାର ଆଶ୍ରୟ ନେବାରେ ଯେ ଘୋର ଯନ୍ତ୍ରଣା, ଖ୍ୟାତିଲାଭ ପାଇଁ ବିଳାସୀ ଓ ଅଭିମାନୀ ଲୋକଙ୍କର ସେବା, ଏସବୁ ସେମାନଙ୍କ ଅଭିଜ୍ଞତାର ବାହାରେ ଥିଲା

ସଂସାର କୋଳାହଳରୁ ଦୂରରେ ଥିବାରୁ ସେମାନଙ୍କର ଚିନ୍ତା ସଂଯତ ଥିଲା, ହୃଦୟରେ କୁତ୍ସିତ ଭାବନା ସ୍ଥାନ ପାଉ ନଥିଲା । ସେମାନଙ୍କର ଜୀବନ ଶାନ୍ତିପୂର୍ଣ୍ଣ ଥିଲା ।

ଟିପ୍ପଣୀ—(କ) ଯହିଁ ଉଚ୍ଚନ୍ତ ଶ୍ୟାମଳ ଦୂବ ସ୍ତରଜେ-ଯେଉଁଠାରେ ଶବ ପୋତା ଯାଇଅଛି ତାହାର ଉପରିଭାଗ ଭୂମିପାଖରେ ଟିକିଏ ଉଚ୍ଚ; ସେଥିରେ ତୃଣ ଲତା ମାଡ଼ିଥିବାରୁ ସେ ଦୂବ ଶ୍ୟାମ ବର୍ଣ୍ଣ ଧାରଣ କରିଅଛି ।

**Where heaves the turf in a many mouldering heap.**

[ଖ] କୀରତି ପ୍ରେମଭୂମେ ଦେଖ ଏ ପଥ ।
ଯେତେ କୀର୍ତ୍ତି ଅର୍ଜିଲେ ମଧ୍ୟ ମନୁଷ୍ୟ ମୃତ୍ୟୁର ଅଧୀନ ।

**The paths of glory lead but to the grave**

[ଗ] ଖୋଦିତ କୀର୍ତ୍ତି ଅବା ପ୍ରତିମୂରତି
ଫେରାଇ ପାରିବ କି ଅସୁ ( ଗ ) ।

ଲୋକେ ମରିଗଲେ ତାହାକୁ ସ୍ମରଣ ରଖିବା ଲାଗି ତାହାର କୀର୍ତ୍ତି ପ୍ରସ୍ତର ସ୍ତମ୍ଭ ଉପରେ ଖୋଦିତ କରାଯାଇଥାଏ, କାହାର ବା ପ୍ରତିମୂର୍ତ୍ତି ସ୍ଥାପିତ ହୋଇଥାଏ । ମାତ୍ର ଏହାଦ୍ୱାରା ମୃତଦେହକୁ ଫେରି ଆସେ କି ? ଆତ୍ମା ଥରେ ଶରୀର ଛାଡ଼ି ଚାଲିଗଲେ ଆଉ ସେ ଶରୀରକୁ ଫେରି ଆସେ ନାହିଁ ।

Can storied won or animated bust;
Back to its mansion call the fleeting breath ?

(ଘ) ସ୍ୱର୍ଗୀୟବହ୍ନିରେ ମଗ୍ନ ଯାହାଙ୍କ ମନ ।
ଯେଉଁମାନଙ୍କର ହୃଦୟ ଉଚ୍ଚ ସ୍ୱର୍ଗୀୟ ଚିନ୍ତାରେ ପୂର୍ଣ୍ଣ ଥିଲା ।
Some heart once pregnant with celestial fire

(ଙ) କେତେ ଅମୂଲ୍ୟ ରତ୍ନ......ମଧୁରତା ବିଜଙ୍ଗେ ।

(ମୂଳ ଇଂରେଜୀ)

Full many a gem of purest ray serene
The dark unfathom'd oceans bear.
Full many a flow'r is born to blush unseen,
And waste its sweetness on the desert air.

(ଚ) ମୂକ ମିଲ୍ଟନ୍ ।

ମିଲ୍ଟନ୍—ପ୍ରସିଦ୍ଧ ଇଂଲଣ୍ଡ କବି ଥିଲେ । ତାଙ୍କର କବି ପ୍ରତିଭା ବିକାଶ ପାଇବାର ସୁଯୋଗ ଥିଲା । ମାତ୍ର ଗ୍ରାମ ଶ୍ମଶାନରେ ଶାୟିତ କବିଙ୍କର ପ୍ରତିଭା ଥିଲେହେଁ ତାହାର ବିକାଶ ହୋଇ ନ ଥିଲା କିମ୍ବା ସେ କବି ବୋଲି ପରିଚିତ ହୋଇ ନ ଥିଲେ ।

(ଛ) ପ୍ରତାପ ସିଂହ—ମେବାରର ରାଣା ଥିଲେ । ଶତ ଯନ୍ତ୍ରଣା ଓ ଶତ ପ୍ରଲୋଭନ ସତ୍ତ୍ୱେ ସେ ମୋଗଲ ସାମ୍ରାଜ୍ୟର ବଶ୍ୟତା ସ୍ୱୀକାର କରି ନ ଥିଲେ । ମେବାରର ସ୍ୱାଧୀନତା ଓ ରାଜପୁତ ଜାତିର ଗୌରବ ରକ୍ଷା ଲାଗି ସେ ଆଜୀବନ ଯୁଦ୍ଧ କରିଥିଲେ ।

(ଜ) ଅଭାବ ଦୂର କରିଥିଲା ସନ୍ତୋଷ—

ସରଳ ଗ୍ରାମବାସୀ ସର୍ବଦା ସନ୍ତୋଷରେ କାଳ ହରଣ କରୁଥିବାରୁ କେଉଁଥିର ତାଡ଼ନା ଅନୁଭବ କରୁ ନ ଥିଲେ । ଅଭାବର ପୂରଣ ନ ହେଲେ ଦୁଃଖ ହୁଏ । ଯେ ନିଜ ଭାଗ୍ୟରେ ସନ୍ତୁଷ୍ଟ; ସେ ଅଭାବ ଜନିତ ଦୁଃଖ ଅନୁଭବ କରିବେ ନାହିଁ ।

(ଝ) ନିଷ୍ଠୁର ହୃଦେ ବଧି———ନ ଥିଲା ମନେ ।

କେହିକେ ସିଂହାସନ ପାଇବା ଲାଗି ଅପରକୁ, ଏପରିକି ନିଜ ଆତ୍ମୀୟ-ସ୍ୱଜନଙ୍କୁ ବିନାଶ କରିବାକୁ କୁଣ୍ଠିତ ହୁଅନ୍ତି ନାହିଁ । ମୋଗଲ ଇତିହାସରେ

ଏହାର ଯଥେଷ୍ଟ ପ୍ରମାଣ ମିଳିବ । ସରଳ ଗ୍ରାମବାସୀଙ୍କ ହୃଦୟରେ ନିଜର ଅଧିସ୍ୱାମୀଙ୍କୁ ବିନାଶ କରି ରାଜପଦ ଲାଭର ଅଭିଳାଷ କେବେହେଲେ ଜାଗି ନ ଥିଲା ।

(ଙ) ପାପ ଜନିତ———ଯନ୍ତ୍ରଣା ଭାର ।

ଲୋକ ପାପ କାର୍ଯ୍ୟ କଲେ ମନେ ମନେ ଲଜ୍ଜିତ ହୁଏ । ନିଜର ଲଜ୍ଜାକୁ ଅନ୍ୟମାନଙ୍କ ନିକଟରୁ ଲୁଚାଇବା ପାଇଁ ଲୋକ ମିଥ୍ୟାର ଆଶ୍ରୟ ନିଏ । ଏପରି କରିବା ଦ୍ୱାରା ମନୁଷ୍ୟ ଅନ୍ୟମାନଙ୍କ ନିନ୍ଦାରୁ ମୁକ୍ତ ପାଇ ପାରେ; ମାତ୍ର ବିବେକର ଦଂଶନରୁ ରକ୍ଷା ପାଇ ନ ପାରେ । ତାର ହୃଦୟ ଯନ୍ତ୍ରଣାରେ ଛଟପଟ ହୁଏ ।

---

## (୫୩) କବିର ସଂସାର

### ( ଶ୍ରୀ ଜୟକୃଷ୍ଣ ମିଶ୍ର )

କବି କିପରି ଜଗତରେ ବିପୁଳ ପ୍ରଭାବ ବିସ୍ତାର କରେ ତାହା ଏହି କବିତାରେ ବର୍ଣ୍ଣିତ ହୋଇଅଛି ।

**ଶବ୍ଦାର୍ଥ**— [ପୃ ୧୩୮] ସୁରଜାହ୍ନବୀ—ସ୍ୱର୍ଗଗଙ୍ଗା; ନିଃସରି – ବାହାରି ହୋଇ; ନିଃସ୍ୱ-ଦରିଦ୍ର; ପବି-ବଜ୍ର; ଶିହରିବା—ଆନନ୍ଦରେ ପୁଲକିତ ହେବା; ସୁଷମା-ଶୋଭା; ଆସାର—ବର୍ଷା; କରକା-କୁଆପଥର; ତୁଷାର-ବରଫ [୧୩୯] ଉରସେ-ବକ୍ଷରେ; ମଞ୍ଚା-ଦୋଳା; ରସାପ୍ଳୁତ; ଶାନ୍ତି-ଆଗାର-ଶାନ୍ତିର ଆଗାର [ଷଷ୍ଠୀତତ୍ପୁରୁଷ] ଶାନ୍ତିର ଆଧାର; ଆକର-ଖଣି; ପରିମାଣି-ମାପକାରୀ; [ପୃ ୧୪୦] ଚରାଚର – [ଚର + ଅଚର] ସ୍ଥାବର ଜଙ୍ଗମ; ବାରାଶି-ସାଗର, ସୁଧା-ଅମୃତ; [ପୃ ୧୪୧] ମଞ୍ଜୁଳ-ମଧୁର; [ପୃ ୧୪୨] ବିଦ୍ରୂପ-ଅବଜ୍ଞା, ଉପହାସ (ପୃ ୧୪୩); ସନ୍ତରି-ସନ୍ତରଣ କରି, ନନ୍ଦନ-ସ୍ୱର୍ଗର ଉପବନ; ସୁନାସୀର-ଇନ୍ଦ୍ର [ସୁ ନାସୀର ଯାହାର]; ନାସୀର-ସେନା; ଧରିଧରି-

ପର୍ବତ; [ପୃ୬୪୪] ବାଦାଲ-ମେଘ; ଊର୍ମି-ଲହରୀ; ବାରିଧି [ବାରି-ଧା+ଇ] ସମୁଦ୍ର; ମୋହ ମୁଦ୍‌ଗର-ମୋହ ନାଶ କରିବାପାଇଁ ମୁଦ୍‌ଗର ପରି ।

**ସାରକଥା**—କବିର ହୃଦୟ ଚିର ଶୁଭ୍ର ବଦାନ୍ୟରସରେ ପୂର୍ଣ୍ଣ । ସେହି ହୃଦୟରୁ ସ୍ୱର୍ଗୀୟ ଗଙ୍ଗାର ଧାରା ପରି ରସ ପ୍ରବାହିତ ହୋଇ ଜଗତକୁ ଭସାଇ ଦିଏ । ତାହା ଫଳରେ ଅତି ଦରିଦ୍ର ମଧ୍ୟ ଆନନ୍ଦ ଲାଭ କରେ । ବଜ୍ର ପରି କଠିନ ହୃଦୟ ମଧ୍ୟ ତରଳି ଯାଏ ।

କବି ତାହାର କାବ୍ୟରେ ହାସ୍ୟରସର ସୃଷ୍ଟି କରି ନୀରସ ହୃଦୟକୁ ସରସ କରେ । ରୁକ୍ଷ ସାହାରା ମରୁଭୂମିରେ ମଧ୍ୟ ଆନନ୍ଦର ଧାରା ପ୍ରବାହିତ ହୁଏ । କୋଟି ଶୋଭାର ସୃଷ୍ଟି ହୁଏ । କବିଙ୍କର ଅଫଣ ଶକ୍ତି ପ୍ରଭାବରେ ସେ କି ଗ୍ରୀଷ୍ମ, କି ବର୍ଷା, କି ପ୍ରବଳ ବାତ୍ୟା ସବୁ ମଧ୍ୟରେ ଆନନ୍ଦ ସୃଷ୍ଟି କରିପାରନ୍ତି ।

କବି କବିତା ରୂପକ ଯାଦୁମନ୍ତ୍ର ପ୍ରଭାବରେ ପୃଥିବୀପୃଷ୍ଠରେ ଅଦ୍ଭୁତ କାର୍ଯ୍ୟ ସାଧନ କରି ପାରନ୍ତି । ପ୍ରବଳ ଝଞ୍ଜା ବକ୍ଷରେ ମଧୁର ମଳୟ ସୃଷ୍ଟି କରି ପାରନ୍ତି । ଦୁଃଖୀ ପ୍ରତି ତାଙ୍କର ସହାନୁଭୂତି ଢଳପଡ଼େ । ତାଙ୍କର ସଙ୍ଗୀତ ଦୁଃଖରେ ସ୍ନିଗ୍ଧ । ତାଙ୍କର ଦୁଃଖ ଗୀତରେ ବାଧାବାଙ୍କର ଆସନ ଟଳେ ।

ଯାହାକୁ ଦୁଃଖ କହନ୍ତି କବି ସେଥିରେ ସ୍ୱର୍ଗ ଉପସ୍ଥାପିତ କରି ଶାନ୍ତିମୟ କରିଥାନ୍ତି । କବି ଦୁଃଖ ଗୀତରେ ଯେ କେତେ ମାଧୁରୀ ଦେଇ ପାରନ୍ତି ତାହା କହି ହେବ ନାହିଁ ।

କବିଙ୍କର କରୁଣ ଗୀତରେ କଠିନ ପଥର, ବୃକ୍ଷ, ଲତା, ପୃଥିବୀ, ଆକାଶ, ଚନ୍ଦ୍ର, ସୂର୍ଯ୍ୟ ସମସ୍ତେ କାନ୍ଦି ଉଠନ୍ତି । କବିଙ୍କର ଅଶ୍ରୁଧାରା ଅତି ଉଚ୍ଚ ଓ ମୂଲ୍ୟବାନ୍ । କବି ପ୍ରକୃତିର ଚିତ୍ରକର । ସେ ହଳାହଳକୁ ମଧ୍ୟ ଲକ୍ଷ ଗୁଣରେ ଅମୃତମୟ କରି ପାରନ୍ତି । ଇତର ଲୋକେ ଯାହାକୁ ନୀରସ ମନେ କରନ୍ତି ତାହା କବିଙ୍କ ନିକଟରେ ରସମୟ । ସଂସାରରେ ଯାହା କ୍ଷୁଦ୍ର ବୋଲି ପରିଚିତ ତାହା କବିପକ୍ଷରେ ଅତି ଉଚ୍ଚ ।

କବି ଏତାଦୃଶ ତୂଳିକା ଧରି ନିର୍ଜୀବକୁ ଜୀବନ ଦାନ କରନ୍ତି। କୁତ୍ସିତକୁ ସୁନ୍ଦର କରନ୍ତି। ତାଙ୍କର ତୂଳୀର ମହିମା ଧନ୍ୟ। ଜଗଦ୍‌ବାସୀ କବିଙ୍କର କବିତାର ମାଧୁରୀ ପାନ କରି ସଂସାରର ଦୁଃଖ ସୁଖ ଭୁଲିଯାନ୍ତି।

କବି ମାନବର ହୃଦୟତନ୍ତ୍ରୀକୁ ସ୍ପର୍ଶକରି କବିତା ଗାନକଲେ ସମସ୍ତ ପୃଥିବୀ ହର୍ଷରେ ମାତିଯାଏ। ତାଙ୍କର ମଧୁର ଗାନ ନିକଟରେ ସ୍ୱର୍ଗ ସୁଖ ମଧ୍ୟ ପରାଭୂତ ହୁଏ।

କବି ତନ୍ମୟ ହୋଇ ଭକ୍ତିମୟ ଗାନ ଦ୍ୱାରା ଜଗତକୁ ଭକ୍ତିରସରେ ପ୍ଲାବିତ କରିଦିଏ। ଲୋକେ ମୁକ୍ତି ପଥରେ ଧାବିତ ହୁଅନ୍ତି। ସେ କବିତାର ଅଞ୍ଜନ ଲୋକଚକ୍ଷୁରେ ବୋଳିଦେଇ ସୁପ୍ତ ମାନବ ଜାତିକୁ ଜାଗ୍ରତ କରିଥାନ୍ତି। କବି କଳ୍ପନାରେ ଜଗତ ବିଚରଣ କରନ୍ତି। କେହି ପ୍ରତିବନ୍ଧକ ହୋଇ ପାରନ୍ତି ନାହିଁ। କଳ୍ପନା ବଳରେ ସେ କେତେବେଳେ ଲୋକଙ୍କୁ ହସାନ୍ତି, କେତେବେଳେ ବା କନ୍ଦାନ୍ତି। ସାଧାରଣ ଲୋକେ କବିକୁ ପାଗଳ ଚିନ୍ତାର ଅନୁଚର ବୋଲି ବା କେବଳ ବାତୁଳ ବୋଲି କହିଥାନ୍ତି, ମାତ୍ର ସେହି କଳ୍ପନାହିଁ ତାଙ୍କର ଧନ। ତାହାରି ବଳରେ ସେ ଜଗଦ୍‌ବାସୀଙ୍କ ମଧ୍ୟରେ ଆନନ୍ଦ ଆଣନ୍ତି, ନବୀନ ପ୍ରେରଣା ଦିଅନ୍ତି। କବିର କଳ୍ପନା ଧନ୍ୟ!

ନୀଚମନା ଅଭିମାନୀ ସମାଲୋଚକମାନେ କବିଠାରେ ଶତ ଶତ ଦୋଷ ଅନ୍ୱେଷଣ କରନ୍ତି; କିନ୍ତୁ କବି ଶବ୍ଦଯୋଜନାରେ ବ୍ୟସ୍ତ। ସେ ଏହି ସମାଲୋଚନା ପ୍ରତି ଭ୍ରୂକ୍ଷେପ ନ କରି ସ୍ୱର୍ଗୀୟ ରାଜ୍ୟରେ ବିହାର କରନ୍ତି। କବିର ହୃଦୟ ସ୍ୱର୍ଗୀୟ ମଧୁର ରସରେ ପୂର୍ଣ୍ଣ। ତାଙ୍କର ହୃଦୟକୁ ଦୈନ୍ୟ ସ୍ପର୍ଶ କରି ପାରେ ନାହିଁ। ସେ ଉଦାତ୍ତପଥର ପଥିକ। ସଂସାରର ଜଞ୍ଜାଳରେ ସେ ଅଭିଭୂତ ହୁଅନ୍ତି ନାହିଁ। ପ୍ରଚଣ୍ଡ ଅଗ୍ନି ମଧ୍ୟରେ କବି ସ୍ନିଗ୍ଧ ମଳୟର ସ୍ପର୍ଶ ପାନ୍ତି।

କବି ପୃଥିବୀରେ ଥାଇ ମଧ୍ୟ ସ୍ୱର୍ଗଗଙ୍ଗାରେ ଆନନ୍ଦରେ ସନ୍ତରଣ କରନ୍ତି, ନନ୍ଦନ କାନନରେ ବିହାର କରନ୍ତି, ତାଙ୍କ ନିକଟରେ ଯଶ ବା ଅପଯଶର ଚିନ୍ତା ନ ଥାଏ। କବିଙ୍କର ଗାନ ନିକଟରେ ଇନ୍ଦ୍ରପଦ ମଧ୍ୟ ତୁଚ୍ଛ।

କବି କବିତା ମଧ୍ୟରେ ପ୍ରାଣର ଉପଲବ୍ଧି କରନ୍ତି । କବିତା ନିକଟରେ ବ୍ରହ୍ମପଦ ମଧ୍ୟ ହୀନ ପ୍ରତିଭାତ ହୁଏ । କବିତାର ପ୍ରଭାବ ସମଗ୍ର ଜଗତରେ ଅନୁଭୂତ ହୁଏ ।

ଆଲୋକ, ଅନ୍ଧକାର, ନିର୍ମଳ ଜଳଭରା ନଦୀ, ତରଙ୍ଗମୟ ସମୁଦ୍ର ସମସ୍ତେ କବିହୃଦୟରେ ସ୍ୱର୍ଗୀୟଭାବ ଜାଗ୍ରତ କରିଥାନ୍ତି ।

ପ୍ରକୃତିର ମାଧୁରୀ କବି ହୃଦୟରେ ଅପୂର୍ବଭାବ ଜାତ କରେ । କବି କାବ୍ୟ ଦୃଷ୍ଟି ବଳରେ ନିତ୍ୟ ନୂତନ ସୃଷ୍ଟି କରିଥାନ୍ତି ।

କବି ସମାଜର ଗୁରୁ । ବିଶ୍ୱକବି ଭଗବାନଙ୍କର ଅଂଶ ନେଇ କବି ଜନ୍ମଗ୍ରହଣ କରିଥାନ୍ତି । ଜଗତ ଜଡ଼ତା ଅନ୍ଧକାରରେ ଆବୃତ; ମାତ୍ର କବିର କବିତାରେ ଜଗତ ଆଲୋକିତ ହୁଏ । କବି ହିଁ ଜଗତର ଗର୍ବ ଅଭିମାନ ଚୂର୍ଣ୍ଣ କରିବାକୁ ସମର୍ଥ ।

---

## (୭୧) ମାଟିର ମଣିଷ

### (କବି—ଶ୍ରୀ ରାଧାମୋହନ ଗଡ଼ନାୟକ)

**ଶବ୍ଦାର୍ଥ**—ମନ୍ତ୍ର (ମନ୍ତ୍ର+ଅ), ଯନ୍ତ୍ର (ଯନ୍ତ୍ର+ଅ), ମୁଗ୍ଧ (ମୁହ୍+ତ) ମୂଢ଼, ମୂର୍ଖ, ରୁଦ୍ର (ରୁଦ୍+ର) ଭୟଙ୍କର, ଦାନବ (ଦନୁ+ଅ) ରାକ୍ଷସ ଫଉଜ—ସୈନ୍ୟ, ଭୀମ (ଭୀ+ମ) ଭୟଙ୍କର, ଭୈରବ (ଭୀରୁ+ଅ) ଭୀଷଣ, ରବ (ରୁ+ଅ) ଶବ୍ଦ, ନିଃଶ୍ୱାସ (ନିଃ—ଶ୍ୱସ୍+ଅ), ଉଚ୍ଛ୍ୱାସ (ଉତ୍—ଶ୍ୱସ୍+ଅ), ଧାତ୍ରୀ (ଧା+ତ୍ରୃ+ଈ) ଧାରଣ କାରିଣୀ, ମାତା ଉତ୍ଥାନ (ଉତ୍—ସ୍ଥା+ଅ) ଊର୍ଦ୍ଧ୍ୱମୁଖ ହୋଇ, ଠିଆ ହୋଇ, ବିପୁଳ—ବୃହତ୍, ବୃଦ୍ଧି ପ୍ରାପ୍ତ, ପୁଷ୍ଟ (ପୁଷ୍+ତ), ଚିତା—ଶ୍ମଶାନ ଅଗ୍ନି, ରୁକ୍ଷ (ରୁହ୍+ଷ) କର୍କଶ, ଉରସ—ବକ୍ଷ, ସୁରଭି—ସୁଗନ୍ଧ ଉଲ୍ଲାସ (ଉତ୍—ଲସ୍+ଅ) ଆନନ୍ଦ, ନିଦ୍ରା (ନି—ଦ୍ରା+ଅ—ଆ) ସୁପ୍ତି, ସ୍ପନ୍ଦ—ସ୍ପନ୍ଦନ, କମ୍ପନ, କୈଶୋର (କିଶୋର+ଅ), ଅଧମ—

ଅସ୍ପୃତ, ଆଚ୍ଛନ୍ନ (ଆ—ଛଦ୍ + ତ) ସ୍ନିଗ୍ଧ (ସ୍ନିହ୍ + ତ) ମୂର୍ଚ୍ଛିତ—ମୂର୍ଚ୍ଛନାଯୁକ୍ତ, ପତଙ୍ଗମ [ପତତ୍—ଗମ୍ + ଅ] ଝିଣ୍ଟିକା ପ୍ରଭୃତି କ୍ଷୁଦ୍ର ଜୀବ, ପତଗ, ପତଙ୍ଗ ମଧ୍ୟ ହୁଏ । ଉତ୍‌ଥଳ (ଉତ୍ + ସ୍ଥଳ) ଉଚ୍ଚୁତ୍ଥିବା, ଦ୍ରଷ୍ଟା (ଦୃଶ୍ + ତୃ) ଦର୍ଶନକାରୀ, ଅଙ୍କ (ଅନକ୍ + ଅ) କ୍ରୋଡ଼ ।

**ସାଧୁଶବ୍ଦ:**—ମଥା—ମସ୍ତକ, ମାଟି—ମୃତ୍ତିକା, ସଞ୍ଜ—ସନ୍ଧ୍ୟା, ଖେତ—କ୍ଷେତ୍ର, କିଆରୀ—କେଦାର, ଆଖୁ—ଇକ୍ଷୁ, ଗାଆଁ—ଗ୍ରାମ, କପା—କାର୍ପାସ, ସୋରିଷ—ସର୍ଷପ, ମଉଛବ—ମହୋତ୍ସବ, ଛଇଳ—ଛବିଳ, ନଈ—ନଦୀ, ପାଣି—ପାନୀୟ ।

**ସାରକଥା**—ଦେଶର କୃଷକକୁଳ ନିଜର ଜୀବିକା ଚାଷକୁ ଛାଡ଼ି କଳକାରଖାନାରେ କାମ କରିବାକୁ ଚାଲି ଯାଉଥିବାର ଦେଖି କବି ଆକ୍ଷେପ କରି କହୁଅଛନ୍ତି, "ହେ, କୃଷକ, ତୁ କି ଭ୍ରମରେ ପଡ଼ିଅଛୁ ! ଏହି ଯେଉଁ ପାଞ୍ଚ ଖୋଲା ବୃକ୍ଷର ପରି ଠିଆ ହୋଇଅଛି ଓ ମଝିରେ ଥରେ ଥରେ ଗର୍ଜି ଉଠୁଅଛି ତାହାର ମୂଳରେ କି ପ୍ରଚଣ୍ଡ ଅଗ୍ନିଶିଖା ଜଳୁଅଛି ତାହା ଦେଖିପାରୁ ନାହୁଁ କି ? ଏ ବସୁଧାରେ ତୋର ଜନ୍ମ, ଏହି ବସୁଧା ତୋର ରକ୍ଷା କରିଆସୁଛି, ଏହାରି ଦ୍ୱାରା ତୋର ଦେହ ପୁଷ୍ଟ ହୋଇଅଛି, ଏଭଳି ମାଆର କୋଳର ସ୍ନେହ ଓ ଆଦର ଭୁଲି କିପରି ତୁ ଯନ୍ତ୍ରର ଆଶ୍ରୟ ନେଇଅଛୁ ? ଥରେ ତୋର ସେହି ମା ଆଡ଼କୁ ଚାହିଁ ଦେଖ୍ ସେ କିପରି ଦୁଃଖରେ କାନ୍ଦୁଛି । ମାଟିର ଶ୍ରୀ ତୁଟି ଯାଇଅଛି । ତୋର ସରଳ କୃଷକ ଜୀବନକୁ ଭୁଲି ଯାଇଅଛୁ । ବର୍ଷା ପରେ ଚଷା ଜମିରୁ ଯେଉଁ ସୁଗନ୍ଧ ବାହାରେ ତାକୁ ତୁ କଣ ଭୁଲିଗଲୁ ? ପାଚିଲା ଖେତର ସୁବର୍ଣ୍ଣ ଆଭା ତୋ ମନରେ ଜାଗେ ନାହିଁ କି ? ଦିନେ ପାଚିଲା ଧାନର ସୁଗନ୍ଧରେ ତୋର ହୃଦୟ ଜାଗି ଉଠୁଥିଲା । ବାଲ୍ୟ ବୟସରେ ଆଖୁ କିଆରୀର ଗୁଇ ତଳେ ବସି କେତେ ହସଖେଳ କରୁଥିଲୁ । ପୌଷ ମାସରେ ଅମୃତ ପରି ମିଠା ଦୋରୁଅ ପିଇ କି ଆନନ୍ଦ ପାଉ ନ ଥିଲୁ ! କପା କିଆରୀରେ କପା ଫୁଟିଲେ ଆକାଶରେ ତାରା ଫୁଟିଲା ପରି କେଡ଼େ ସୁନ୍ଦର ଦେଖା ନ ଯାଏ ! ସୋରିଷ କ୍ଷେତ୍ରର ବର୍ଣ୍ଣ ମନୋହର । ଗାଆଁର

ନଈରୁ ପଲ୍ଲୀ ରମଣୀମାନେ ପାଣି ବୋହୁଥାନ୍ତି । ଢାଲବଣଠାରେ ଗାଈ ଘୋଠରେ ଗଉଡ଼ ପିଲା ମଧୁର ସ୍ୱରରେ ବଂଶୀ ବଜାଉଥାଏ, ଏସବୁ କଣ ଆଜି ତୁ ଏକଦାରେ ଭୁଲିଗଲୁ ? ଆଜି ତୋ ପ୍ରାଣରେ ଗ୍ରାମ୍ୟ ଜୀବନର ସରଳତା ଓ ସରସତା ନାହିଁ । ତୋର ପ୍ରାଣ ଯେପରି ଏ କାରଖାନାର ଇସ୍ପାତ୍ ନିହା ପରି ଟାଣ ହୋଇ ଯାଇଅଛି । ଯନ୍ତ୍ର କେବେହେଁ ପ୍ରାଣକୁ ସରସ, ସୁନ୍ଦର କରିପାରିବ ନାହିଁ । କାରଖାନାରୁ ଦିନ ରାତି କେବଳ ଚିତାର ଧୂଆଁ ଉଠୁଅଛି । ଏହାର ମୋହରେ ପଡ଼ିଲେ ଆଉ ରକ୍ଷା ନାହିଁ । ପତଙ୍ଗ ଯେପରି ନିଆଁର ଆଲୁଅରେ ଭୁଲି ନିଆଁରେ ପଡ଼ି ପ୍ରାଣ ହରାଏ ସେପରି ତୁ ଯନ୍ତ୍ରର ମୋହରେ ପଡ଼ି ନିଜର ସର୍ବସ୍ୱ ନାଶ କର ନା । ଆଜି ତୋତେ ଧରିତ୍ରୀ ମାତା ଡାକୁଛନ୍ତି, ଲଙ୍ଗଳ ଡାକୁଅଛି । ସେହି ମାଟିକୁ ଫେରି ଆସିଲେ ତୋର ମଙ୍ଗଳ ହେବ । ଏହି ମାଟିରେ ତୋର ଜନ୍ମ । ସେହି ମାଟି ଉପରେ ଝଡ଼ି ପଡ଼ିବୁ । ଜନ୍ମ ଜନ୍ମାନ୍ତରରେ ପୁଣି ସେହି ମାଟିରେ ଜନ୍ମ ହେବୁ । ତୋର ପୁରୁଣା ସାହାକୁ ଫେରିଆ । ବୃଥା ଆଉ ନିଜକୁ ଯନ୍ତ୍ର ଧୂଆଁ ସାଥିରେ ମିଶାଇ ଧୂଆଁ କରି ଦେ ନା ।

---

## ସପ୍ରସଙ୍ଗ ବ୍ୟାଖ୍ୟା

(୧) ବୋଲଇ ସେ ହନୁ————କାହିଁ ରହିଲୁ । ( ପୃ ୭୯ ସ୍ତା )

ଏହି କବିତାଂଶଟି ବିଚିତ୍ର ରାମାୟଣର ସୀତା ହନୁମାନ ସମ୍ବାଦରୁ ଉଦ୍ଧୃତ । ହନୁମାନ ଲଙ୍କାର ଅଶୋକ ବନରେ ସୀତାଙ୍କୁ ଦେଖି ତାଙ୍କୁ ରାମଚନ୍ଦ୍ରଙ୍କର ସମ୍ବାଦ ପ୍ରଦାନ କଲେ । ଶୀଘ୍ର ସମୁଦ୍ର ପାର ହୋଇ ଲଙ୍କାକୁ ବାନର ସୈନ୍ୟ ସହିତ ଆସି ତାଙ୍କୁ ଉଦ୍ଧାର କରିବା ନିମନ୍ତେ ସୀତା ରାମଙ୍କ ନିକଟକୁ ସମ୍ବାଦ ଦେଲେ । ଏହି ସମ୍ବାଦ ଶୁଣି ହନୁମାନ ତାଙ୍କୁ ନିଜ କାନ୍ଧରେ ବସାଇ ଶ୍ରୀରାମଙ୍କ ନିକଟକୁ ଘେନିଯିବାର ଇଚ୍ଛା ପ୍ରକାଶ କଲେ । ମାତ୍ର ସୀତାଦେବୀ ଏଥିରେ ସ୍ୱୀକୃତ ନ ହୋଇ କହିଲେ, "ସ୍ତ୍ରୀ ପକ୍ଷରେ ପର ପୁରୁଷର ଶରୀର ସ୍ପର୍ଶ କରିବା ଅନୁଚିତ । ଅବଶ୍ୟ ରାବଣ ମୋର

ଶରୀରକୁ ସ୍ପର୍ଶ କରି ମୋତେ ଧରି ଆଣିଅଛି । ମାତ୍ର ସେ ମୋର ଇଚ୍ଛା ବିରୁଦ୍ଧରେ ସେପରି କରିଥିଲା । ଏବେ ମୁଁ କପରି ନିଜ ଇଚ୍ଛାରେ ପର ପୁରୁଷକୁ ସ୍ପର୍ଶ କରିବି । ସେଥିରେ ମୋର ପାପ ହେବ । ବିଶେଷତଃ ରାବଣ ମୋତେ ଚୋରାଇ ଆଣି ଏଠାରେ ରଖିଅଛି । ତୁମେ ଯଦି ମୋତେ ଏଠାରୁ ରାବଣ ପରି ଚୋରାଇ ନେଇ ଉଦ୍ଧାର କରି ନେବ ମୋ ପ୍ରଭୁ ରାମଚନ୍ଦ୍ରଙ୍କର ନିନ୍ଦା ହେବ । ରାମଚନ୍ଦ୍ର ସମୁଦ୍ର ପାର ହୋଇ ରାବଣକୁ ଯୁଦ୍ଧରେ ବିନାଶ କରି ମୋତେ ଉଦ୍ଧାର କଲେ ତାଙ୍କର ପଣ ପୃଥିବୀରେ ଖ୍ୟାତି ଲାଭ କରିବ ।

(୨) ଦରଜୀବ ରସେ — — — — ହୋଇବ ଗାଈ (ପୃ ୨୦୪)

ଉକ୍ତ ପଦ୍ୟାଂଶଟି କବିସୂର୍ଯ୍ୟଙ୍କର 'ଜଗତେ କେବଳ' କବିତାରୁ ଅଣାଛି ।

ଯଦି ଘୁଷୁରି ବର୍ଷେ କାଳ ପର୍ଯ୍ୟନ୍ତ ବିଷ୍ଠା ଖାଇବା ଛାଡି ଦେଇ କେବଳ ଗାଈ ଦୁଧ ପିଇ ରହେ ଓ ଦେହରେ ଗଙ୍ଗା ମୃତ୍ତିକା ବୋଳି ହୁଏ, ତଥାପି ସେ ଗାଈ ହେବ ନାହିଁ, ଘୁଷୁରି ହୋଇ ରହିବ । ଯେତେ ଚେଷ୍ଟା କଲେ ସୁଦ୍ଧା କାହାରି ପ୍ରକୃତି ବଦଳି ଯାଇ ନ ପାରେ । ନୀଚ ଲୋକ ବଡ ହେବାକୁ ଅଯଥା ଚେଷ୍ଟା କଲେ କେବଳ ଉପହାସର ପାତ୍ର ହୁଏ ।

(୩) ଏକଇ ନାହିଁ … … … … ବିବାଦ (ପୃ୮୧ଷ୍ଠା)

ଯେଉଁ ଲୋକ ଅଜ୍ଞତା ହେତୁରୁ ନିଜ ମାତୃଭାଷା ବୁଝା ବୁଝିବାକୁ ଅକ୍ଷମ ସେ ଲୋକ ସମାଜରେ ଉପହାସର ପାତ୍ର ହୋଇଥାଏ । ଏପରି ଲୋକ ପକ୍ଷରେ ନିଜର ଅଜ୍ଞତା ଲୁଚାଇ ରଖି ସମାଜରେ ନୀରବ ରହିବା ଉଚିତ । ଯଦି ସେ ତାହା ନ କରି ଅଭିବାଦନରେ ପଣ୍ଡିତ ଲୋକ ସଙ୍ଗରେ ବିବାଦ କରେ, ତେବେ ତାକୁ ଲୋକେ ହସରେ ଉଡାଇ ଦେବା ସ୍ୱାଭାବିକ ।

ଷଡ଼ଦର୍ଶନ—କପିଳଙ୍କ ସାଂଖ୍ୟ, ପାତଞ୍ଜଳଙ୍କ ଯୋଗ, ଗୌତମଙ୍କ ନ୍ୟାୟ କଣାଦଙ୍କ ବୈଶେଷିକ, ଜୈମିନିଙ୍କ ପୂର୍ବମୀମାଂସା ଓ ବ୍ୟାସଦେବଙ୍କର ଉତ୍ତର ମୀମାଂସା, ଏହି ଛଅଟି ମତବାଦର ନାମ ଷଡ଼୍ଦର୍ଶନ ।

(୪) ସ୍ମୃତିନାବ ......... କାଳସ୍ରୋତେ । (ପୃ ୮୪ ସ୍ତ)

ଏପରି କବିତାଂଶଟି କବିବର ରାଧାନାଥ ରାୟଙ୍କ 'ବାରବାଟୀ'ରୁ ଉଦ୍ଧୃତ । ଏଠାରେ କବି ଇତିହାସ ପ୍ରସିଦ୍ଧ ବାରବାଟୀ ଦୁର୍ଗ ବିଷୟରେ କହିଅଛନ୍ତି । ବାରବାଟୀ ଦୁର୍ଗରେ କେତେ ପରାକ୍ରାନ୍ତ ବୀର ଜୀବନ ଦେଇଥିଲେ । ସତେ ଯେପରି କି ବାରବାଟୀର ମାଟି ସେହି ବୀରମାନଙ୍କର ରକ୍ତପିଣ୍ଡରେ ଗଢ଼ା ହୋଇଅଛି । ଆଜି ବାରବାଟୀ ଅତି ହୀନ ଦଶାରେ ପଡ଼ିଅଛି । ମାତ୍ର ଦିନେ ଏହା ଉତ୍କଳୀୟ ବୀରମାନଙ୍କର ଲୀଳାଭୂମି ଥିଲା । ତେଣୁ ବାରବାଟୀକୁ ଦେଖିଲା ମାତ୍ରେ ଉତ୍କଳର ପ୍ରାଚୀନ ଗୌରବ ସ୍ମୃତି-ପଥରେ ଜାଗ୍ରତ ହୁଏ । ମନ ସ୍ମୃତି-ରୂପକ ପୋତ ସାହାଯ୍ୟରେ କାଳ ସ୍ରୋତର ବିପରୀତ ଦିଗରେ ଗତି କରେ । ଅର୍ଥାତ୍ ବାରବାଟୀର ବର୍ତ୍ତମାନ ଦୁର୍ଦ୍ଦଶା ଦେଖିଲେ ଅତୀତ କାଳର ତାହାର ଗୌରବମୟ କାହାଣୀ ମନେ ପଡ଼େ ।

ଏଠାରେ ସ୍ମୃତିକୁ ନୌକା ସହିତ ଓ କାଳକୁ ସ୍ରୋତ ସହିତ ତୁଳନା କରା ଯାଇଅଛି ।

(୫) କାଞ୍ଚି ଅଭିଯାନେ.............ସନ୍ଧ୍ୟା ସମୀର (ପୃ ୮୪-୮୫ ସ୍ତ)

ଏହି କବିତାଂଶରେ ପ୍ରାଚୀନ ବାରବାଟୀ ଦୁର୍ଗ ସହିତ ଭଗ୍ନ ସ୍ତୂପରେ ପରିଣତ ଆଧୁନିକ ବାରବାଟୀର ପାର୍ଥକ୍ୟ ଦେଖାଇ ଦିଆଯାଇଅଛି ।

ଯେତେବେଳେ ଉତ୍କଳ ସମ୍ରାଟ ପୁରୁଷୋତ୍ତମ ଦେବ କାଞ୍ଚି ଆକ୍ରମଣ କରିବାକୁ ଯାଉଥିଲେ ସେତେବେଳେ ଏହି ବାରବାଟୀର ବୀରସୈନିକ-ମାନଙ୍କର ରଣ ବାଦ୍ୟରେ ତାର ପ୍ରାଚୀର ପ୍ରତିଧ୍ୱନିତ ହୋଇଥିଲା । ଆଜି ସେ ବୀର ନାହାନ୍ତି କିମ୍ବା ସେ ବାରବାଟୀ ନାହିଁ । ସେ ଦୁର୍ଗ ଏବେ ଭଗ୍ନ

ପଡ଼ିଛି । ତାହାର ପ୍ରାଙ୍ଗଣରେ ବୃଥା ରାଜସିକ ଆଡ଼ମ୍ବରପୂର୍ଣ୍ଣ ଦରବାର ବସିଅଛି । ସେହି ବୀରମାନଙ୍କର ବଂଶଧରମାନେ ଆଜି ଉତ୍କଳର ନବ୍ୟ ସଭ୍ୟ ସନ୍ତାନରୂପେ ଦରବାରରେ ବସିଅଛନ୍ତି ଯେଉଁ ବାରବାଟୀ ଦିନେ ବୀରମାନଙ୍କର ବାଦ୍ୟରେ ପ୍ରତିଧ୍ୱନିତ ହେଉଥିଲା, ସେହି ବାରବାଟୀ ଆଜି ହୀନସ୍ଥାନ ଅବସ୍ଥାରେ ପଡ଼ି ଦରବାରକୁ ଆସିଥିବା ଉତ୍କଳର ତଥାକଥିତ ସଭ୍ୟ ସମାଜକୁ ଦେଖୁଅଛି ।

(୭) ହା ଧିକ୍, ଏ କ୍ଷୁଦ୍ରସାର— — — – ପାପେ ବଳି । (ପୃ ୮୭)

'ଦରବାର' କବିତାରୁ ଏହି ଅଂଶଟି ଆନୀତ । ଉପାଧି ଲାଳସାରେ ଲୋକେ କିପରି ମନୁଷ୍ୟତାରୁ ଭ୍ରଷ୍ଟ ହେଉଅଛନ୍ତି, ତାହା ଏଠାରେ ବର୍ଣ୍ଣନା କରାଯାଇଅଛି । ପଦ ବା ଉପାଧି ଅନ୍ତଃସାର ଶୂନ୍ୟ । ଏହି ଉପାଧିର କୌଣସି ସ୍ଥାୟୀ ମୂଲ୍ୟ ନାହିଁ । ତଥାପି ଲୋକେ ଏହି ଉପାଧି ପାଇବା ପାଇଁ ନିଜର ସର୍ବସ୍ୱ ବ୍ୟୟ କରିବାକୁ କୁଣ୍ଠିତ ହେଉ ନାହାନ୍ତି । ଲୋକେ ଉପାଧି ପାଇବା ଆଶାରେ ନୀଚ ବ୍ୟକ୍ତିର ସେବା କରି ଆପଣାର ମନୁଷ୍ୟତ୍ୱକୁ ହରାଉଅଛନ୍ତି । ସାମାନ୍ୟ ଉପାଧି ପାଇଁ ମନୁଷ୍ୟତାକୁ ନଷ୍ଟ କରିବା ମନୁଷ୍ୟ ପକ୍ଷରେ ନିତାନ୍ତ ଅଜ୍ଞତାର ପରିଚାୟକ ।

ଏଠାରେ ହୀନ ବ୍ୟକ୍ତିର ସେବାକୁ ବଳିପୀଠ ରୂପେ ଓ ମନୁଷ୍ୟତାକୁ ବଳି ରୂପେ କଳନା କରାଯାଇଅଛି ।

(୭) ଧିକ ଧିକ ଆହା — – — — — –ଆତ୍ମହା (ପୃ ୮୮)

ଲୋକେ କିପରି ପାର୍ଥିବ ଉପାଧି ଲାଳସାରେ ଚିରନ୍ତନ ସତ୍ୟକୁ ଭୁଲି ଅସ୍ଥାୟୀ ପଦାର୍ଥରେ ଭୁଲି ଯାଉଛନ୍ତି, ତାହା ଏଠାରେ ବର୍ଣ୍ଣନା କରାଯାଇ ଅଛି । ବଡ଼ ଦୁଃଖର ବିଷୟ ଯେ ଲୋକେ ସାତ୍ତ୍ୱିକ ଧର୍ମ ପ୍ରତି ଦୃଷ୍ଟି ନ ଦେଇ ଅପର ଲୋକର ମନସ୍ତୁଷ୍ଟି କରିବା ପାଇଁ ବ୍ୟାକୁଳ ହେଉଅଛନ୍ତି । ଏହା ଫଳରେ ସେମାନେ ଅଳ୍ପକାଳସ୍ଥାୟୀ ଐହିକ ସୁଖ ପାଉଛନ୍ତି । ମାତ୍ର ସେମାନଙ୍କର ପରକାଳ ନଷ୍ଟ ହେଉଅଛି । ଆକାଶର ମୁକ୍ତ ପରୀ

ସେପରି ନିଜ ଅଜ୍ଞତାରୁ ଜାଲରେ ପଡ଼ି ପ୍ରାଣ ହରିବେ, ଲୋକେ ସେହିପରି ମାୟାରେ ପଡ଼ି ଆତ୍ମଘାତୀ ହେଉଅଛନ୍ତି । ତା ନୋହିଥିଲେ ମନୁଷ୍ୟ ଇହଜୀବନରେ ସଦ୍‌ଗତି ଲାଭ କରିବ, ପରଲୋକରେ ଉଚ୍ଚ ଆସନ ପାଇବ, ତାହା ନ ଭାବି ସଂସାରର ଦୁଇଦିନିଆ ଖ୍ୟାତି ପାଇଁ ବ୍ୟାକୁଳ ହୁଅନ୍ତା ନାହିଁ ।

(୮) ନିରୁପାଧି ସତ୍ତା — — — — ମର୍ତ୍ତ୍ୟଦେହେ । (ପୃ ୮-୯୦ ପୃ)

ଆତ୍ମତତ୍ତ୍ୱ ବା ଈଶ୍ୱର ଚିନ୍ତା ଦ୍ୱାରା ମନୁଷ୍ୟ କିପରି ଉଚ୍ଚ ସ୍ଥାନ ଲାଭ କରିପାରେ ତାହା ଏଠାରେ କୁହାଯାଇଅଛି । ଲୋକେ ଉପାଧି ପାଇବା ଆଶାରେ ଅନ୍ୟ ଲୋକଙ୍କର ପୂଜାରେ ବ୍ୟସ୍ତ, ମାତ୍ର ଈଶ୍ୱରଙ୍କର ଅସ୍ତିତ୍ୱ ଉପଲବ୍ଧି କଲେ ଲୋକେ କେବେହେଲେ ସ୍ୱପ୍ନରେ ସୁଦ୍ଧା ପାର୍ଥିବ ଉପାଧି ପାଇବାକୁ ଇଚ୍ଛୁକ ହୁଅନ୍ତେ ନାହିଁ । ଭଗବାନଙ୍କ ଅସ୍ତିତ୍ୱ ଉପଲବ୍ଧି କଲେ ମନୁଷ୍ୟ ଏହି ମରଣଶୀଳ ଇହଧାମରେ ମଧ୍ୟ ଅମରତ୍ୱ ଲାଭ କରି ପାରିବ, ଧ୍ୱଂସଶୀଳ ମନୁଷ୍ୟ ଦେହ ଧାରଣ କରି ମଧ୍ୟ ଦେବତାର ଆସନ ପାଇ ପାରିବ ।

ଅମୃତ ଖାଇଲେ ମନୁଷ୍ୟ ଅମର ହୁଏ । ଈଶ୍ୱରଙ୍କ ଅସ୍ତିତ୍ୱ ଉପଲବ୍ଧି ଅମୃତ ପରି । ତାହାକୁ ଖାଇଲେ ଅର୍ଥାତ୍ ଈଶ୍ୱରଙ୍କର ସତ୍ତା ଅନୁଭବ କଲେ ମନୁଷ୍ୟ ଅମରତ୍ୱ ଲାଭ କରିବ ।

(୯) ସଭାପତିଙ୍କର ଖାନ୍‌ସାମା — — — — — ଶିବଙ୍କର ସାପ (ପୃ ୯୫)

ଦରବାରରେ ଉପସ୍ଥିତ ଲୋକମାନେ ପ୍ରତ୍ୟେକେ ନିଜର ବଡ଼ିମା ଦେଖାଇବାକୁ ବ୍ୟଗ୍ର । ଏପରିକି ସଭାପତିଙ୍କର ପାଚକ (ଖାନସମା) ମଧ୍ୟ ନିଜର ବାହାଦୁରି ଦେଖାଇ ଅନ୍ୟ ଲୋକଙ୍କ ଉପରେ ନିଜର ପ୍ରାଧାନ୍ୟ ପ୍ରକାଶ କରିବାକୁ ଚେଷ୍ଟା କରେ । ସେ ଆପଣାର ନୀଚତା ଭୁଲିଯାଇ ତା ଠାରୁ ଉଚ୍ଚ ପଦସ୍ଥ ଲୋକଙ୍କ ଉପରେ ମଧ୍ୟ ପ୍ରାଧାନ୍ୟ ଦେଖାଇବାର ଏକମାତ୍ର କାରଣ ଏହି ଯେ, ସେ ସଭାପତିଙ୍କର ଚାକର । ଗରୁଡ଼ ସାପମାନଙ୍କୁ ଖାଏ । ତାକୁ ଦେଖିଲେ ସାପମାନେ ଡରି କୁଆଡ଼େ ଭୟରେ ଲୁଚି ଯାଆନ୍ତି ।

ମାତ୍ର ଶିବଙ୍କ ଦେହରେ ଥିବା ସାପମାନେ ଶିବଙ୍କର ଆଶ୍ରିତ ହୋଇ ଥିବାରୁ ଗରୁଡ଼ଙ୍କୁ ଆଦୌ ଭୟ କରନ୍ତି ନାହିଁ । ବରଂ ତାଙ୍କ ଉପରେ ପ୍ରତାପ ଦେଖାନ୍ତି । ସେହିପରି ବଡ଼ ଲୋକଙ୍କ ପାଖରେ ଥିବା ଚାକରମାନେ ଅନ୍ୟମାନଙ୍କ ଉପରେ ଅଯଥା ଆଧିପତ୍ୟ ବିସ୍ତାର କରିଥାନ୍ତି ।

(୧୦) ମଶା ସିନା ଆପଣାକୁ — — — — — —ନ ଜାଣେ (ପୃ ୮୩)

ସଂସାରରେ ପ୍ରତ୍ୟେକ ଲୋକ ନିଜକୁ ବଡ଼ ମନେ କରେ । ନିଜର ବଡ଼ିମା ହେତୁ ମନୁଷ୍ୟ ଭାବେ ଯେ ତା ବିନା ପୃଥିବୀର ବହୁତ କ୍ଷତି ହେବ । ମାତ୍ର ପ୍ରକୃତ ପକ୍ଷରେ କେହି ବଡ଼ ନୁହନ୍ତି । କୌଣସି ଲୋକର ଜନ୍ମ ବା କାହାରି ମୃତ୍ୟୁ ଦ୍ୱାରା ପୃଥିବୀର କିଛି ବୃଦ୍ଧି ବା କ୍ଷୟ ହୁଏ ନାହିଁ । ସଂସାର ଚିରଦିନ ସେହିପରି ଚାଲିଥାଏ । ମନୁଷ୍ୟ ପ୍ରକୃତ ପକ୍ଷରେ ନିତାନ୍ତ ନଗଣ୍ୟ । ତେଣୁ ବଡ଼ିମା ପରିତ୍ୟାଗ କରିବା ଉଚିତ ।

ଥରେ ଗୋଟିଏ ମଶା ଗୋଟିଏ ଷଣ୍ଢର ଶିଙ୍ଗ ଉପରେ ବସିଥିଲା । ଷଣ୍ଢ ମୁଣ୍ଡ ତଳକୁ କରି ଘାସ ଚରୁଥିଲା । ମଶା ମନେ କଲା ଯେ ନିଶ୍ଚୟ ତାର ଗୁରୁତ୍ୱରୁ ଷଣ୍ଢ ମୁଣ୍ଡ ଟେକି ପାରୁନାହିଁ । ତେଣୁ ସେ କହିଲା, "ଯଦି ମୋର ଭାରରେ ତୋର ଏତେ କଷ୍ଟ ହେଉଛି, ତେବେ କହିଲେ ମୁଁ ଏଠାରୁ ଉଠିଯିବି ।" ଷଣ୍ଢ ଏହା ଶୁଣି କହିଲା, "ତୁ ଯେ ଏଠାରେ ଅଛୁ ମୁଁ ଆଦୌ ଜାଣି ନ ଥିଲି ।"

ମନୁଷ୍ୟମାନେ ମଶା ପରି ଏହି ପୃଥିବୀରେ ନିଜ ନିଜକୁ ଖୁବ୍ ବଡ଼ ମନେ କରନ୍ତି । ମାତ୍ର ବାସ୍ତବରେ ସେମାନେ ଅତି ହୀନ, ନଗଣ୍ୟ ।

ଏଠାରେ ମନୁଷ୍ୟକୁ ମଶା ସହିତ ଓ ପୃଥିବୀକୁ ଷଣ୍ଢ ସଙ୍ଗେ ତୁଳନା କରିଯାଇଛି ।

(୧୧) ବୁଦ୍ଧିଜନେ ତୁମ୍ଭ ନାଟ — — — — ଚମ୍ପୁ (ପୃ୯୬ଶ୍ଳୋ)

କେହି କେହି ଲୋକ ଜନସାଧାରଣଙ୍କୁ ସନ୍ତୁଷ୍ଟ କରାଇବା ଉଦ୍ଦେଶ୍ୟରେ ଆଡ଼ମ୍ବର କରି ଦେଖାଇଥାନ୍ତି କିମ୍ବା ନାଟ କରିଥାନ୍ତି । ବଡ଼ଲୋକେ

ଏହି ନାଟ ଦେଖି ତାଙ୍କର ମର୍ଯ୍ୟାଦା ବୃଦ୍ଧିପାଇ ବର୍ଦ୍ଧିତ ହୁଅନ୍ତି । ସେମାନେ ଜାଣନ୍ତି ଯେ ବୃଥା ଅର୍ଥ ବ୍ୟୟ କରି ଏପରି କରିବା ଦ୍ୱାରା କେବଳ ମନୁଷ୍ୟତ୍ୱ ହାନିହୁଏ, କିନ୍ତୁ ଇତର ଲୋକେ ସେହି ନାଟ ଦେଖି ତାଙ୍କରି ପ୍ରଶଂସା କରିଥାନ୍ତି ।

ଧାନ କୁଟିଲେ ସେଥିରୁ ଚାଉଳ ବାହାରେ । ମାତ୍ର ଚମ୍ପ କୁଟିଲେ କିଛି ଫଳ ନାହିଁ । ଇତର ଲୋକଙ୍କ ତୁଷ୍ଟି ପାଇଁ ନାଟ କରାଇବା ଚମ୍ପ କୁଟିବା ପରି । ଜନତାର ମନର ଗତି ସ୍ଥିର ନ ଥାଏ । ତାକୁ ଗୋଟିଏ ବନ୍ୟ ମୂର୍ଖଧା ପଶୁ ସଙ୍ଗେ ତୁଳନା କରାଯାଇପାରେ । ଆଜି ଯେଉଁ ଲୋକ ଜନତା ନିକଟରେ ଆଦର ଓ ସମ୍ମାନ ପାଉଛି, କାଲି ହୁଏତ ସେ ତାଙ୍କରି ନିକଟରେ ଅନାଦୃତ ଓ ଅପମାନିତ ହୋଇପାରେ । ତେଣୁ ଜନତାର ପ୍ରୀତି ସାଧନ ପାଇଁ ଅର୍ଥବ୍ୟୟ କରିବା ଅଜ୍ଞତାର ପରିଚାୟକ ।

(୨୨) ଜାତି ନନ୍ଦଘୋଷ — — — ବନ୍ଧାଥିଲେ ।

ସ୍ୱାର୍ଥପର ଲୋକେ ଦେଶର ନେତୃତ୍ୱ ନେଲେ ଜାତିର କି କ୍ଷତି ହୁଏ ତାହା ଏହି କବିତାଂଶରେ ଦେଶପ୍ରାଣ ମଧୁସୂଦନ ପ୍ରକଟିତ କରିଅଛନ୍ତି ।

ରଥ ଚଳାଇବା ପାଇଁ ଉପଯୁକ୍ତ ସାରଥି ଲୋଡ଼ା । ନଚେତ୍ ରଥ ଭାଙ୍ଗି ଯାଇପାରେ ବା ଓଲଟି ପଡ଼ିପାରେ । ଜାତି ନନ୍ଦଘୋଷ ରଥ ପରି । ତାକୁ ଚଳାଇବା ପାଇଁ ଉପଯୁକ୍ତ ନେତା ଆବଶ୍ୟକ । ଅନେକ ସମୟରେ ସ୍ୱାର୍ଥପର ଲୋକେ ନିଜର ସ୍ୱାର୍ଥ ସାଧନ କରିବା ଉଦ୍ଦେଶ୍ୟରେ ନେତାର ସ୍ଥାନ ମାଡ଼ି ବସନ୍ତି । କିନ୍ତୁ ସେପରି ଲୋକେ କେବେହେଁ ଜାତିକୁ ଉପଯୁକ୍ତ ମାର୍ଗରେ ଚଳାଇ ପାରିବେ ନାହିଁ ।

ଗାଡ଼ି ଟାଣିବା ବେଳେ ଯେପରି ଘୋଡ଼ା ମୁହଁରେ ଦାନା ପୁଡ଼ିଆ ବନ୍ଧା ହୋଇଥାଏ, ସେ ଗାଡ଼ି ଟାଣିବା ପରିବର୍ତ୍ତେ ଦାନା ଖାଇବାରେ

ଲାଗି ଉଦ୍ଦିଷ୍ଟ । ଗାଡ଼ି ଆଗକୁ ଚାଲିବ ନାହିଁ । ସେହିପରି ସ୍ୱାର୍ଥାନ୍ୱେଷୀ ଲୋକ ଦେଶର ନେତୃତ୍ୱ ଗ୍ରହଣ କଲେ ସେ ନିଜ ସ୍ୱାର୍ଥ ସିଦ୍ଧି କରିବାରେ ଲାଗିବ; ଦେଶର ଲୋକମାନଙ୍କ ଉନ୍ନତି କରିବ ନାହିଁ ।

ନନ୍ଦିଘୋଷ—ଜଗନ୍ନାଥଙ୍କର ରଥ !

(୧୩) ସ୍ୱାର୍ଥର ବନିତା... ...ହେଲେ ଏକଥା ।

ଲୋକେ ସ୍ୱାର୍ଥପର ହେଲେ ଦେଶର କି କ୍ଷତି ହୁଏ ତାହା ଏହି ପଦ୍ୟାଂଶରେ ବର୍ଣ୍ଣିତ ।

ସ୍ତ୍ରୀ ଯେପରି ସୁଖ ଦୁଃଖରେ ସ୍ୱାମୀର ଅନୁସରଣ କରେ ସେହିପରି ତୋଷାମଦ ସର୍ବଦା ସ୍ୱାର୍ଥର ଅନୁସରଣ କରେ । ସ୍ୱାର୍ଥପର ଲୋକ ନିଜର ସ୍ୱାର୍ଥ ସାଧନ କରିବା ଉଦ୍ଦେଶ୍ୟରେ ଅନ୍ୟମାନଙ୍କର ତୋଷାମଦ କରେ । ସ୍ୱାର୍ଥ ଏବଂ ତୋଷାମଦ ଫଳରେ ଭୟ ଓ ମିଥ୍ୟାର ଉତ୍ପତ୍ତି ହୁଏ । ସ୍ୱାର୍ଥପର ଲୋକର ଭିତରେ ଉଦ୍ଦେଶ୍ୟ ଜାଣିଲେ ଜଣା ପଡ଼ିଯିବ ଏଥିପାଇଁ ତାର ମନରେ ଭୟ ଥାଏ । ତୋଷାମଦ କରିବାକୁ ଯାଇ ତାକୁ ଅନେକ ସମୟରେ ମିଥ୍ୟାର ଆଶ୍ରୟ ନେବାକୁ ପଡ଼ିଥାଏ । ଯେଉଁଠାରେ ସ୍ୱାର୍ଥ, ତୋଷାମୋଦ, ଭୟ ଓ ମିଥ୍ୟା ଏକତ୍ର ଥାଆନ୍ତି ସେଠାରେ ଉନ୍ନତିର ଆଶା କରିବା ବିଡ଼ମ୍ବନା । ଏମାନେ ଏକତ୍ର ହେଲେ ଦେଶରେ ବିପ୍ଳବ ହେବା ନିଶ୍ଚିତ ।

ନେତା ନିଃସ୍ୱାର୍ଥପର, ସ୍ୱାଧୀନଚେତା, ନିର୍ଭୀକ ଓ ସତ୍ୟବାଦୀ ହେଲେ ଦେଶର ଉନ୍ନତି ହେବ ।

(୧୪) ଲୁଟେଗ ଦାସ ଖେଳି ...... ଫିଙ୍ଗି ବଳରେ

ଏହି ପଦଟି ଉତ୍କଳମଣି ଗୋପବନ୍ଧୁଙ୍କର 'ସ୍ୱଦେଶ ଚିନ୍ତା' କବିତାରୁ ଉଦ୍ଧୃତ । କବି ଭୁବନେଶ୍ୱରର ଖଣ୍ଡ ଧଉଳିର ଚିନ୍ତା କରି କହୁଅଛନ୍ତି ଯେ ସନ୍ଧ୍ୟା ସମୟରେ ଭୁବନେଶ୍ୱର ନିକଟରୁ ଧଉଳି ମନ୍ଦିରର ଗୋଟିଏ ଗୋଟିଏ ଅତି ମନୋହର ପୂର୍ଣ୍ଣାଙ୍ଗ ମୂର୍ତ୍ତି ଦୀର୍ଘାଧାରେ ଦେଖାଯାଏ । ସେ ମୂର୍ତ୍ତିର

ସୌନ୍ଦର୍ଯ୍ୟ ଦେଖିଲେ ମନେହୁଏ ଯେପରି କୌଣସି କାଳ୍ପନିକ ଶିଳ୍ପୀ ମୂର୍ତ୍ତିଟି ସଦ୍ୟ ଗଢ଼ି ରଖିଯାଇଅଛି । ମୁନିରେ କୌଣସି ଦ୍ୱିଧା ଜନ୍ମିବାରୁ ତାକୁ ଭୂମିତଳେ ଲୁଗୁଇ ଦେଇ ଯାଇଅଛି ।

ସେହି ଅପୂର୍ବ ସୁନ୍ଦର ମୂର୍ତ୍ତିକୁ ଦେଖିଲେ ଏହାକୁ ମଧ୍ୟ ମନେହୁଏ, ଯେପରି କି ସ୍ୱର୍ଗର ଅପ୍ସରା ମେନକା ଶକୁନ୍ତଳାଙ୍କୁ ଜନ୍ମ ଦେଇ ଏହି ନିର୍ଜନ ସ୍ଥାନରେ ଛାଡ଼ି ଚାଲିଯାଇ ଅଛନ୍ତି ।

ମେନକା ସ୍ୱର୍ଗର ଅପ୍ସରା । ଶକୁନ୍ତଳା ତାଙ୍କ ଗର୍ଭରୁ ଜନ୍ମିଥିଲେ । ଜନ୍ମ ସଂଗେ ସଙ୍ଗେ ସେ ତାଙ୍କୁ କଣ୍ୱ ମୁନିଙ୍କ ଆଶ୍ରମ ବନରେ ଛାଡ଼ି ଚାଲି ଯାଇଥିଲେ । ଶକୁନ୍ତ ବା ପକ୍ଷୀମାନେ ଆଚ୍ଛାଦ ଦେଇ ତାଙ୍କର ଜୀବନ ରକ୍ଷା କରିଥିଲେ ବୋଲି ତାଙ୍କର ନାମ ଶକୁନ୍ତଳା । ପରେ ସେ କଣ୍ୱ ମୁନିଙ୍କ ଆଶ୍ରମରେ ଲାଳିତ ପାଳିତ ହୋଇଥିଲେ ।

(ଖ) କର୍ପୂର ଉଡ଼ି — — — ହଏ ସେ ଧୂଳି ।

ଉତ୍କଳମଣି ଗୋପବନ୍ଧୁ ବାରବାଟୀର ଦୁର୍ଦ୍ଦଶାକୁ ଲକ୍ଷ୍ୟ କରି କହୁଅଛନ୍ତି—ବାରବାଟୀ ଦିନେ ଉତ୍କଳର ଶୌର୍ଯ୍ୟ, ବୀର୍ଯ୍ୟ ଏବଂ ଐଶ୍ୱର୍ଯ୍ୟର ସାକ୍ଷୀ ଥିଲା । ତାର ନବତଳ ପ୍ରାସାଦ ଧ୍ୱଂସ ସ୍ତୂପରେ ପରିଣତ । ତାର ପୂର୍ବ ଗୌରବର ଲେଶମାତ୍ର ନାହିଁ । ଏ ଧ୍ୱଂସ ସ୍ତୂପ ଦେଖିଲେ ହୃଦୟରେ ଗଭୀର ଦୁଃଖ ଜନ୍ମେ ।

କର୍ପୂର ଉଡ଼ିଗଲେ ସେ ଯେଉଁ କନାରେ ବନ୍ଧା ହୋଇଥାଏ ସେଥିରେ ମଧ୍ୟ ଟିକିଏ ସୁବାସ ରହେ । ତଦ୍ଦ୍ୱାରା କର୍ପୂରର ସ୍ମୃତି ଥାଏ । ମାତ୍ର କନା ପୋଡ଼ି ପାଉଁଶ ହୋଇଗଲେ କର୍ପୂରର ସ୍ମୃତି ଧୂଳା ଧ୍ୱଂସ ପାଇଥାଏ ।

ସେହିପରି ଉତ୍କଳର ବିଭବ ଚାଲି ଯାଇଥିଲେହେଁ, ବାରବାଟୀର ନବତଳ ପ୍ରାସାଦଟି ଥିଲେ ତାହା ଉତ୍କଳର ପ୍ରାଚୀନ ଗୌରବର ସ୍ମୃତି ଜାଗ୍ରତ କରୁଥାଆନ୍ତା । କିନ୍ତୁ ସେ ମଧ୍ୟ ଭଗ୍ନସ୍ତୂପରେ ପରିଣତ । ତେଣୁ ଉତ୍କଳର ପ୍ରାଚୀନ ବିଭବର ସ୍ମୃତି ମଧ୍ୟ ଲୋପ ପାଉଅଛି । ଏ ଦୁର୍ଦ୍ଦଶା ଦେଖି କିଏ ଧୈର୍ଯ୍ୟ ଧରି ରହିପାରିବ ?

---

(୧୨) ପାଅ ବୀର, ରଣେ — — — ଧର୍ମର ହେଉ ଜୟ ।

ଏହା 'ଗାନ୍ଧାରୀର ଆଶୀର୍ବାଦ' କବିତାରୁ ଗୃହୀତ । କୁରୁପତି ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କ ବିରୁଦ୍ଧରେ ଯୁଦ୍ଧଯାତ୍ରା କରିବା ପୂର୍ବରୁ ମାତା ଗାନ୍ଧାରୀଙ୍କର ଆଶୀର୍ବାଦ ଭିକ୍ଷା କଲେ । ମାତ୍ର ଗାନ୍ଧାରୀ ଜାଣିଥିଲେ ଯେ ପାଣ୍ଡବମାନେ ନିର୍ଦ୍ଦୋଷ । ତାଙ୍କର ନିଜ ପୁତ୍ରମାନେ ଅନ୍ୟାୟ କରୁଛନ୍ତି । ତେଣୁ ସେ ଦୁର୍ଯ୍ୟୋଧନଙ୍କୁ 'ଜୟୀ ହୁଅ' ଏହି ଆଶିଷ ଦେଇ ନ ପାରି କହିଲେ, "ହେ ବତ୍ସ ବୀର ଦୁର୍ଯ୍ୟୋଧନ, ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହୁଅ । ଚିରକାଳ ଧର୍ମର ଜୟ, ଅଧର୍ମର ପରାଜୟ ହୁଏ । ଧର୍ମ ଯୁଦ୍ଧର ଫଳ ତାହାହିଁ ହେବ । ପୃଥିବୀରୁ ପାପବୃତ୍ତି କ୍ଷୟ ହେବ । ଧର୍ମର କଦାପି କ୍ଷୟ ହୋଇ ନ ପାରେ । ଜଗତରେ ଧର୍ମର ଜୟ ହେଉ ।"

ଏପରି କହିବା ଦ୍ୱାରା ଗାନ୍ଧାରୀଙ୍କର ମାତୃ ହୃଦୟର ଉଦାରତା ଓ ଧର୍ମ ପ୍ରତି ଐକାନ୍ତିକ ନିଷ୍ଠାର ପରିଚୟ ମିଳୁଅଛି ।

---

## MODEL QUESTIONS

1. What is a ବୋଇଲି as used in Oriya literature ? Give in your own words the ideas containd in କେଶବ କୋଇଲି । Why is it so called ?
2. "ଏକଲବ୍ୟ illustrates the highest example of reverence shown by a disciple to his preceptors—" Justify.
3. Do you agree with the following remark ? "The magnanimity of ଏକଲବ୍ୟ is only heightened by the baseness of ଦ୍ରୋଣ" ; Give reasons for your answer.

4. Compare and constrast the character of the Pandabas and the Kauraves as they are depicted in the poem "ଏକାଲିଦାସ ଛୁଦାଣିଣ ।"
5. Do you agree that the letter which ଭୀମ wrote to ନଳ is full of conceit and arrogance ? Write in your words the portion of the letter dealing with his prowess.
6, Give a pen picture of the old boat man ବୁଢ଼ା ନାଉରୀ and briefly reproduce the speech of the ଗୋପୀ's to him.
7. Give in brief the conversation between ସୀତା and ହନୁମାନ ।
8. Why did ସୀତା refuse to be carried away from the island of ଲଙ୍କା by ହନୁମାନ ?
9. ଅଭିମନ୍ୟୁ in his ଯଶୋଦା ବିଳାପ brings out the most delicate feelings of a mother towards her child. Reproduce in your own words these feelings as far as possible.
10. Bring out the ideas contained in the poem, 'ଜଗତେ ଦେବଳ' by ଜବ୍ୟମୀ ।
11. State with suitable illustrations the views of ରାଧାନାଥ on Durabars held for the presentation of titles and honours.
12. ନୃପ ଦରବାରରେ ତ ଯଶ ମେଳ ନାହିଁ,
ଛଳ ଚପ ରୋଷ ଭାଗ୍ୟ ଧରମାହିଁ ।
What Durbar does Radhanath refer to here ?

Compare and contrast earthly Durbars with that Durbar.

13. Radhanath's ଦରବାର is a satire on human vanity as well as a code of moral conduct. Justify this statment with relevent quotations.

14. Write after poet ନନ୍ଦକିଶୋର a short essay on ଝିଅ ।

15. What according to Mr. M. S. Das are the characteristics of a true leader of the country ?

16. Reproduce the ideas contained in the poems 'ମା' and 'ଆବାହନ' by କୁନ୍ତଳା କୁମାରୀ ।

17. What are the chief places of historical and aesthetical interest that one comes across in a journey from ମହେନ୍ଦ୍ର ଗିରି to କଟକ ।

18. Write after ଗୋପବନ୍ଧୁ notes on the following places ଖଣ୍ଡଗିରି, ଉଦ୍ୟାନ, ଚିଲିକା, ସତ୍ୟବାଦୀ, ଭୁବନେଶ୍ୱର and କୋଣାର୍କ ।

19. ବନ୍ଦୀର ସ୍ୱଦେଶ ଚିନ୍ତା breathes a spirit of patriotic fervour peculiar to ପଣ୍ଡିତ ଗୋପବନ୍ଧୁ— Justify with appropriate quotations.

20. How did ଧଉଳି ପାହାଡ଼ change the course of ଅଶୋକ's life ?

21. What are the thoughts that arise in the poet's mind on looking at ଧଉଳି ଗିରି in an evening ?

22. How have truth and non-violence of Mahatma Gandhi changed the outlook of the people of the world in general and of Indians in particular ?

23. What loss has Orissa sustained in the demise of ଉତ୍କଳ ଗୋପବନ୍ଧୁ ?

24. What were the contributions of ଉତ୍କଳ ଗୋପବନ୍ଧୁ to the Oriya nation ?

25. Why should all Oriyas, irrespective of caste and creed show respect to the sacred memory of ଉତ୍କଳ ଗୋପବନ୍ଧୁ ?

26. ଗାନ୍ଧାରୀ illustrates the highest type of motherhood—Justify.

27. How does ଗାନ୍ଧାରୀ differ from other mothers ?

28. Give a pain picture of a typical Orissan village in imitation of the poet ସଚ୍ଚିଦାନନ୍ଦ ।

29. What are the thoughts that arise in mind on a visit to village church yard (ଗ୍ରାମ୍ୟ ଶ୍ମଶାନ)

30. Opportunities count much more than natural abilities. Elaborate this idea with scenes from ଗ୍ରାମ୍ୟ ଶ୍ମଶାନ ।

31. What are the attractions of a rural life that can bring back the man of clay (ମାଟିର ମଣିଷ) from the cities of machines (ଯନ୍ତ୍ରପୁରୀ)

32. Enumerate the poems that you have read on patriotism and summarise one of them.

33. Write in your own words what extraordinary power and influence a Poet Wields.

34. Reproduce some of the moral truths that Ramachandra deduces from the scenery in the rainy season.

35. Describe the lamentations of Sita on her banishment.

---

1. Write in the form of a letter the substance of the poem 'ଓଷ୍ଠର ଭାଷା' (U. U. 1947)

2. Briefly describe the thoughts of 'ଯଶୋଦା' in the poem 'ଯଶୋଦା ବିଳାପ' by ଭକ୍ତଚରଣ ଦାସ । (U. U. 1948)

3. Give the picture of 'ଗ୍ରାମ୍ୟ ଦୃଶ୍ୟ' after the poet, (U. U. 1948)

4. Narrate the event to justify the following line in the poem 'ଧର୍ମ ପ୍ରୟାଣ' ।

ବଳୁଅଛି [illegible] ପାପର ତନୟେ ଶିଖାଇଲୁ ଧର୍ମ ଦେଇଛ କିସ । (U.U. 1947)

5. Give a description of the appearance of 'ବୁଢ଼ା ନାଉରୀ' and the reproach of 'ଚୋର' as given in the poem 'ବୁଢ଼ାନାଉରୀ' (U. U. 1949)

6. Write in short the moral you have derived from the poem 'ଧନବାନ' (U.U. 1949)

7. Explain with reference to the context.

(a) କେବଳ ଶିଖାଇ ନୂପୁରକୁ — ଶିବୁ ଭୁ ଷଣ୍ଢ (U. U. 1948)

(b) ତଣ୍ଡୁ ତରଙ୍ଗେ ଲଗାଇ — ବୋଲୁଛିବ କି ? (U. U. 1949)

(c) ଲୁଚେ ବାଘ ଥିଲା — ବଳନେ (U.U, 1949)

(e) ତାହାର ଜଳ ଉକଣ୍ଠ ହୋଇ — ପ୍ରାଣନାହାଟି ,,

10. Explain with reference to the context.

(a) କହିବା ଲୋକ ତ — ଢୋଡେ ଅଞ୍ଜନ ।
(b) ଜାନ୍ଦୁ ରି ତୋର ମାଟିର ଲକ୍ଷ୍ମୀ — ସ୍ୱ ଭୁବ ପଥେ ।
(c) ନହିବ ସ୍ୱପ୍ନ ହେ — ମୋର କାନ୍ତ ।
(d) ମନୁଷ୍ୟ ପ୍ରକାରେ — ନୈତ୍ୟଗେହେ ।
(e) ସମଜାଇ ନାହିଁ — ଏହି ତାହିଁ ଫଳ ।
(f) ଲୋକ ହେଲେ ଯଥା — ହେଉଥାଇ ।
(g) [illegible] ଜନ୍ମୁଅଛି — ଧୂଳିଜନିଆ ଯୁଗାତ ।
(h) ପଦାଁ ଗୁଁ ଲୋକେ — ପୋଷା ଶ୍ୱାନ ପରି ।
(i) ତଥାପି ତୁମର ମୁକ୍ତି — କୋଟିଏ ହୋଇ ।
(j) ନିରୁପାଧି ସତ୍ତ୍ୱ ପୀୟୂଷ — ଅମର ଜୀବନ ।
(k) ମର୍ତ୍ତ୍ୟେ ପଞ୍ଚ କାନ୍ଦ — ନ ଅଟନ୍ତି ଦୁନିଆ ।
(l) ମହତ ନିଧନେ — ହୃଦସ୍ଥ • ଶିକ୍ଷା ।
(m) ପ୍ରଜ-ଶିଳା ଖଣ୍ଡେ — ସଚନ ନ ଯାଏ ଭାଙ୍ଗି ।
(n) ବନ୍ଧ୍ୟଗିରି ଶୃଙ୍ଗେ — ବହ୍ନି ଅଗନି ।
(o) ସେ ମୃଣ୍ମୟ ସ୍ତୂପ — ଚରଣଯୁଗେ ।

The End.

---

Printed by Jayanta Sathiya at
Sri Radhanath Co-operative Press
Cuttack—1950